# ପ୍ରଗତି

ଲେଖକ —

ଡକ୍ଟର ରାଧାନାଥ ରଥ, ଏମ୍ ଏ., ପିଏଚ୍. ଡି. (ଲଣ୍ଡନ)

ମନୋବିଜ୍ଞାନ ଅଧ୍ୟାପକ,

ରେଭେନ୍ସା କଲେଜ, କଟକ

ପୁନଃସଂଶୋଧିତ ସଂସ୍କରଣ

୧୯୫୮

ପ୍ରକାଶକ—

**ଓଡ଼ିଶା ପବ୍ଲିଶିଙ୍ଗ୍ ହାଉସ୍**

**ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର**

ମୂଲ୍ୟ—ଟ: ୧. [illegible]୫ ନୂ: ପ:

# ପ୍ରବାହ

ଲେଖକ —

ଡକ୍ଟର ରାଧାନାଥ ରଥ, ଏମ୍ ଏ., ପିଏଚ୍. ଡି. (ଲଣ୍ଡନ)
[illegible] ଅଧ୍ୟାପକ,
ରେଭେନ୍ସା କଲେଜ, କଟକ

ପରିବର୍ଦ୍ଧିତ ସଂସ୍କରଣ

୧୯୫୮

ପ୍ରକାଶକ —

ଓଡ଼ିଶା ପବ୍ଲିଶିଙ୍ଗ୍ ହାଉସ୍

ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର

ମୂଲ୍ୟ—ଟ. ୧. ୬୪ ନୂ. ପ.

# ପ୍ରଗତି

## (ସଂଶୋଧିତ ସଂସ୍କରଣ)

**ବନ୍ଧୁ ବିଶ୍ୱମ୍ଭରେ—**

ମୁଁ ଯେତେବେଳେ କେତେଗୁଡ଼ିଏ ପ୍ରବନ୍ଧ ପତ୍ର ପତ୍ରିକାରେ ଲେଖିଥିଲି, ସେତେବେଳେ ମୋର ଉଦ୍ଦେଶ୍ୟ ନ ଥିଲା ଯେ ସେସବୁ ପ୍ରବନ୍ଧ ଗୋଟିଏ ବହି ଆକାରରେ ପ୍ରକାଶିତ ହେବ ; କିନ୍ତୁ ଘଟଣା-କ୍ରମେ ପ୍ରବନ୍ଧ ଗୁଡ଼ିକ ବହି ଆକାରରେ ପ୍ରକାଶିତ ହେଲା । ସାଧାରଣତଃ, ପ୍ରବନ୍ଧ ବହି ଓଡ଼ିଶାରେ ବିକିବା କଷ୍ଟକର ବ୍ୟାପାର, କିନ୍ତୁ ଆନନ୍ଦର କଥା 'ପ୍ରଗତି' ବହିର ଆଦର ଶିକ୍ଷିତ ସମ୍ପ୍ରଦାୟ ଭିତରେ ଆଶାତୀତ ଭାବରେ ହୋଇଥିଲା ।

'ପ୍ରଗତି' ବହିଟି ଗତ ଦୁଇବର୍ଷ ହେଲା ବି. ଏ. କ୍ଲାସ ଛାତ୍ରଙ୍କ ପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ଅତିରିକ୍ତ ପାଠ୍ୟ ହିସାବରେ ମନୋନୀତ ହୋଇଛି । ଅତିରିକ୍ତ ପାଠ୍ୟ ବହି ବୋଧହୁଏ କଲେଜ କ୍ଲାସରେ ପଢ଼ାହୁଏ ନାହିଁ, ସେଥିପାଇଁ ବୋଧହୁଏ ବହିଟି ପ୍ରାୟ କୌଣସି କଲେଜରେ ପଢ଼ାହୁଏ ନାହିଁ । ମୋର ଧାରଣା ଯେ, ଶିକ୍ଷା ଲାଗି ଏ ବହିଟିକୁ ଖୁବ୍ କମ୍ ଛାତ୍ର ପଢ଼ନ୍ତି । ତେଣୁ ପାଠ୍ୟପୁସ୍ତକ ହେବା ଫଳରେ ବହିର ଆଦର ବିଶେଷ ଭାବରେ ବଢ଼ିଯାଇଛି ବୋଲି ମନେ ହୁଏ ନାହିଁ । କିନ୍ତୁ ଏହା ଠିକ୍ ଯେ, ଯେଉଁ ଉଦ୍ଦେଶ୍ୟରେ ହେଉ ପଛକେ, ଛାତ୍ର ଛାତ୍ରୀମାନେ ବହିଟିକୁ ବିଶେଷ ଭାବରେ ପଢ଼ିଥାନ୍ତି । ତାହାହେଉ, ଗତ ଦୁଇ ପାଞ୍ଚ ବର୍ଷ ଭିତରେ ବହିଟିର ପ୍ରଥମ ମୁଦ୍ରଣ ଶେଷ ହୋଇଯାଇଥିବା ନିଶ୍ଚୟ ଆନନ୍ଦର କଥା ।

ଓଡ଼ିଶାର ସହୃଦୟ ବୁଦ୍ଧିମନ୍ତ ପାଠକମାନଙ୍କର ପ୍ରବଳ ବହିଟି ପ୍ରତି ସହାନୁଭୂତି ରହିଥିବା ଯୋଗୁଁ ବହିଟିର ଦ୍ୱିତୀୟ ସଂସ୍କରଣ ମୁଦ୍ରିତ ହେବା ଦରକାର ପଡ଼ିଲା, ଲେଖକ ସେହିମାନଙ୍କଠାରେ ଚିରକୃତଜ୍ଞ ।

| | |
|---|---|
| କଟକ,<br>ଜୁଲାଇ ୧୯୫୮ | ରାଧାନାଥ ରଥ |

# ସୂଚୀ

# ଯୁଗଧର୍ମ

ଧର୍ମ କହିଲେ ଯଦି ବୁଝାଯାଏ ଯେ ଯାହା ସମାଜକୁ ଧରି ରଖିଛି, ତାହାହେଲେ ଧର୍ମ ପ୍ରତ୍ୟେକ ଯୁଗ ମାନବସମାଜର ଜୀବନଯାପନ ପ୍ରଣାଳୀର ସମଷ୍ଟିଗତ ଧାରା ବୋଲି ବୁଝାପଡ଼ିବାରେ । ତା ହେଲେ ଏହା ସନାତନ ନୁହେଁ କିମ୍ବା ଏହାର ଗତି ବା ରୂପ ସର୍ବବ୍ୟାପୀ ଓ ଯୁଗ ଯୁଗ ଧରି ଅପରିବର୍ତ୍ତନୀୟ ନୁହେଁ । ବରଂ ଗତି ଅବସ୍ଥା-କ୍ରମେ ଭିନ୍ନ ଭିନ୍ନ ରୂପ ଧାରଣ କରି ଏହି ଜୀବନସ୍ରୋତ ମଧ୍ୟ ଦେଶ-କାଳପାତ୍ର ଅନୁସାରେ ସ୍ୱତନ୍ତ୍ର ରୂପରେ ପ୍ରକାଶିତ ହୋଇଥାଏ । ଧର୍ମ ଏ ପ୍ରକାର ସ୍ୱଭାବର ଗତିଶୀଳ ବୈଜ୍ଞାନିକ ଦୃଷ୍ଟିକୋଣ କହିଲେ ଭୁଲହେବ ନାହିଁ ।

ମନୁଷ୍ୟ ଯେତେବେଳେ ଅନ୍ଧାର ଗୁହା ଭିତରେ ବାସ କରୁଥିଲା—ନିଜକୁ ବଞ୍ଚାଇ ରଖିବା ପାଇଁ ଶିକାର କରି ମାଂସ ସଂଗ୍ରହ କରୁଥିଲା—ବନ୍ୟ ଜନ୍ତୁମାନଙ୍କର ଚମଡ଼ା ତାର ପରିଧାନ ଥିଲା—ପଥର ବା କାଠର ମୋଟା ମୋଟା ଅସ୍ତ୍ରଶସ୍ତ୍ର ଛଡ଼ା ଆଉ କିଛି ଜାଣି ନ ଥିଲା, ସେତେବେଳକାର ସାମାଜିକ ଧର୍ମ ଥିଲା ଗୋଟିଏ ପ୍ରକାର । ଜୀବନଯାପନ ନୀତି ଅତ୍ୟାବଶ୍ୟକୀୟ ନିୟମ କାନୁନ୍ ଗଢ଼ି ଉଠିଥିଲା ସମାଜର ସମଷ୍ଟିଗତ କାର୍ଯ୍ୟକଳାପରେ ଜଣେ ଯଦି ଘଟଣାକ୍ରମେ ଏକା ଏକା ଗୋଟିଏ ଜନ୍ତୁ ମାରି ଦେଉଥିଲା ତାହାହେଲେ ବି ଆଣି ପହଞ୍ଚାଉଥିଲା ଦଳର ବୟୋଜ୍ୟେଷ୍ଠ ଲୋକ ଆଗରେ । ତା'ର ନିର୍ଦ୍ଦେଶ ଅନୁସାରେ ମାଂସ ଭାଗ

ଯାଇ ହେଉଥିଲା—ସମସ୍ତ ପାଉଥିଲେ ତା'ର ଅଂଶ। ଶ୍ରମ ଥିଲା ସମଷ୍ଟିଗତ। ଏହାର ବ୍ୟତିକ୍ରମ ଅଧର୍ମ—ଯେ ଲୁଚାଇ ତା'ର ଏକ୍କ ଶ୍ରମଫଳ ଲବ୍ଧ ମାଂସ କେଉଁ ଝଟସଲା ସ୍ଥାନରେ ବସି ଭକ୍ଷଣ କରୁଥିଲା ସେ ନିଶ୍ଚୟ ଅଧର୍ମୀ। ଏ ପ୍ରକାର କାର୍ଯ୍ୟକ୍ରମ ସମାଜକୁ ବଞ୍ଚାଇ ରଖିଥିଲା। ଏହାର ଅନ୍ୟଥା ସେ ଯୁଗର ମନୁଷ୍ୟ-ସମାଜକୁ ନଷ୍ଟ କରି ଦେଇଥାନ୍ତା। ତେଣୁ ସେତେବେଳେ ସମଷ୍ଟି-ଗତ ଶ୍ରମ ଓ ସହଯୋଗ ଥିଲା ମୂଳଧର୍ମ।

କୃଷି ଓ ଅନ୍ୟାନ୍ୟ ମାନସିକଶକ୍ତିର କ୍ରମବିକାଶ ସହିତ ଜୀବନଯାପନ ଲାଗି ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ଘଟିଲା ଓ ସେଥି ସଙ୍ଗେ ସଙ୍ଗେ ମଧ୍ୟ ମନୁଷ୍ୟସମାଜର ଆକାର, ପ୍ରକାର, ଆଉର ବ୍ୟବହାର ସମସ୍ତ ବଦଳିଗଲା। ଜୀବନର ଅଧିକାଂଶ ସମୟ ବଣ୍ୟ-ଜନ୍ତୁ ପଛରେ ଦଉଡ଼ି ବା ଖତର ମଧ୍ୟ ଦେଇ ଅନ୍ଧ ଦୌଡ଼ିବା ଦରକାର ହେଉନାହିଁ—ଖାଲି ଖାଦ୍ୟ ଦ୍ରବ୍ୟ ଲାଗି ପ୍ରାଣ ଜୀବନ ବ୍ୟସ୍ତ ହୋଇ ରହିବାର ଆବଶ୍ୟକତା ରହିଲା ନାହିଁ—ଶ୍ରମ ସରଳ ଓ ଜୀବନ ଉପଭୋଗ ଓ ମଧୁର ହୋଇ ପାରିଲା। କୃଷି ବାଣିଜ୍ୟ ପ୍ରଭୃତି ଦ୍ୱାରବନ୍ଦ କଲା - ରାଜ୍ୟ, ରାଜା, ସାମ୍ରାଜ୍ୟ, ଦେଶରକ୍ଷା ଲାଗି ଯୁଦ୍ଧ, ଅନ୍ୟର ଦେଶଲୁଣ୍ଠନ ଲାଗି ଚଢ଼ାଉ ସୈନ୍ୟ ପ୍ରଗଠନ ପ୍ରଭୃତି ସାମାଜିକ ଅନୁଷ୍ଠାନ ସବୁ ଦେଖା ଦେଲା ଏବଂ ଏ ଗୁଡ଼ିକ କ୍ରମେ ଜଟିଳରୁ ଜଟିଳତର ହୋଇ ଉଠିଲା। ବଣ ମଣିଷର ଶିକାରଗତ ଧର୍ମ ବଦଳିଗଲା। କାରଣ ଜୀବନଯାପନ ଲାଗି ସେ ଧର୍ମର ଆଉ ଦରକାର ରହିଲା ନାହିଁ—ବରଂ ଯାହା ହେଲେ ଜୀବନର ଅବସ୍ଥିତି ଓ ଉନ୍ନତି ପାଇଁ ଖୁବ୍ ଦରକାର ହୋଇଥିଲା, ତାହା ମାନବସମାଜର ଅଗ୍ରଗତିରେ ପ୍ରତିବନ୍ଧକ ହୋଇ ଠିଆହେଲା।

ଯେଉଁ ମାନବସମାଜ ଏ ପ୍ରକାରର ପ୍ରକୃତବଣ୍ଟନକୁ ଗ୍ରହଣ କରି ନୂତନ ଯୁଗର ନୂତନ ଧର୍ମ ଗ୍ରହଣ କରି ପାରନ୍ତି ସେମାନେ ଆଗକୁ ଆଗକୁ ଚାଲନ୍ତି—ଉନ୍ନତ ଜାତି ରୂପରେ ପୃଥିବୀପାଇଁ ମାଡ଼ିଯାନ୍ତି; ଆଉ ଯେଉଁମାନେ ପୁରୁଣାକାଳିଆ ଘରର ମୁଠା ଭିତରୁ ନିଜକୁ ମୁକ୍ତ କରିପାରନ୍ତି ନାହିଁ ସେମାନେ ଦିନେ ଲୋପ ପାଇଯାନ୍ତି। ଅର୍ଥାତ୍ ଯେଉଁମାନେ ପରିସ୍ଥିତି ଅନୁସାରେ ନିଜ ଶାସ୍ତ୍ରର ଧର୍ମର ରୂପ ଯେତେ ବେଶି ବଦଳେଇ ପାରନ୍ତି ସେହିମାନେ ସେତେ ବେଶି ଉନ୍ନତ ଓ ପ୍ରଗତିଶୀଳ ହୋଇ ପାରନ୍ତି। ସେତେବେଳେ ଯେଉଁ ଲୋକ ଥିଲେ, ଯେଉଁମାନେ ଆଖି ଖୋଲୁଥିଲେ ଓ କହୁଥିଲେ ଯେ 'ସେମାନଙ୍କର ବାପା ଗୋସେଇଁ ବାପା ଅମଳରେ ଯାହା ଥିଲା ଖୁବ୍ ଭଲ ଥିଲା—ନୂତନ ଯୁଗର ଲୋକେ ଧର୍ମ ଆଡ଼କୁ ଆଗେଇ ଚାଲନ୍ତି—ଅଧର୍ମୀ ହୋଇ ପଡ଼ୁଛନ୍ତି, ଇତ୍ୟାଦି। ନୂତନ ସମାଜର ଲୋକେ ଅଧର୍ମୀ ଥିଲେ ପୁରାତନ ଯୁଗର ଧର୍ମ ଅନୁସାରେ; କିନ୍ତୁ ପ୍ରକୃତ ଯୁଗଧର୍ମ ଅନୁସାରେ ସେହି ପୁରୁଣାକାଳିଆ ରକ୍ଷଣଶୀଳ ଲୋକେହିଁ ଅଧର୍ମୀ ଥିଲେ। ତେଣୁ କାଳକ୍ରମେ ଯୁଗର ନୂତନ ଯୁଦ୍ଧକ୍ଷେତ୍ରରେ ସେମାନେ ପରାସ୍ତ ହେଲେ—ଯେଉଁମାନେ ଜୀବନ ସ୍ରୋତସ୍ୱତୀର ମଧ୍ୟସ୍ଥଳରେ ରହି ସ୍ରୋତ ସ୍ପନ୍ଦନର କର୍ମୀକ ଭାବରେ ମୁଣ୍ଡ ଟେକି ଆଗକୁ ଆସୁଥିବା ନୂତନ ଦେଶର ନୂତନ ଆନନ୍ଦ ଓ ଆଗ୍ରହର ସଙ୍ଗତ ଆଗେଇ ଚାଲିଲେ ସେହିମାନେହିଁ ଅନାଗତ ଭବିଷ୍ୟତର ଅଦ୍ଭୁତ ଦେଶର ଉତ୍ତରାଧିକାରୀ ହେଲେ, ଆଉ ଯେଉଁମାନେ ଖାଲି ପଛକୁ ଦୃଷ୍ଟି ରଖିଲେ, ଅନାଗତକୁ ଭୟ କଲେ, ସେମାନେ କ୍ରମେ ଜୀବନର ପ୍ରଧାନ ପ୍ରବାହରୁ ପୃଥକ୍ ହୋଇଗଲେ। ପ୍ରବାହ ଦୁଇପାଖର ସ୍ରୋତହୀନ କର୍ଦ୍ଦମ ଭିତରେ ପଡ଼ି ଶକ୍ତିହୀନ ଓ

ଓ ଚଳାଚଳରହିତ ହୋଇ କ୍ରମେ ଧ୍ୱଂସ ହୋଇଗଲେ । ଐତିହାସିକ ଘଟନାପ୍ରବାହର ପାଖେ ପାଖେ ଏପରି ଅନେକ ଘଟଣାର ବ୍ୟକ୍ତି ଓ ଜାତିର ଜୀବନର ବର୍ତ୍ତମାନ ଦୃଷ୍ଟିରୁ ଉଦ୍ଧାର କରାଯାଉଛି ।

ତାହାହେଲେ ଏହା ଅନ୍ୱେଷଣରେ ବୁଝାଯାଇପାରେ ଯେ ଉନ୍ନୟନଶୀଳତା ପ୍ରଗତିର ଏକମାତ୍ର ମୂର୍ତ୍ତି—ପରିବର୍ତ୍ତନଶୀଳ ପରିସ୍ଥିତି ସହିତ ତାଳଦେଇ ଚାଲି ପାରିବାରେହିଁ ଜୀବନର ଜୀବନ୍ତ—ସଞ୍ଚାର ନମବକାଶ—ମୃତ୍ୟୁର ଲକ୍ଷଣ । ଏହି ଯୁଗର ବୈଜ୍ଞାନିକ ଅନ୍ୱେଷଣ ଦେଉଛି ଉଚିତ ଯୁଗଧର୍ମ । ଅତୀତ ଜୀବନର ଅଯଥା ଆଲୋଚନାରେ ଜୀବନୀଶକ୍ତିର ବୃଥା ଅପଚୟ ଘଟିଥାଏ ଏବଂ ଯେଉଁ ଜାତି ଯେତେ ବେଶୀ ଅତୀତକୁ ଧରେ ସେ ସେତେ ବେଶି ପରସ୍ତ୍ର ଜରାପନ୍ନ ଓ ଦୁର୍ବଳ । ଆଧୁନିକ ମନୋବିଜ୍ଞାନ ମଧ୍ୟ ଏହାକୁ ସମର୍ଥନ କରେ ।

ଇତିହାସର ବିଶ୍ଳେଷଣରୁ ଜଣାଯାଏ ଯେ ମନୁଷ୍ୟ ସମାଜ ପ୍ରତି ଯୁଗରେ ବଦଳି ଯାଉଛି—ଆଗରୁ ଯାଇଛି ଓ ସେଥି ସଙ୍ଗେ ସଙ୍ଗେ ଯୁଗଧର୍ମ ପ୍ରୟୋଜନ ଅନୁଯାୟୀ ପରିବର୍ତ୍ତିତ ହୋଇ ଯାଇଛି । ବର୍ତ୍ତମାନ ସାରା ମନୁଷ୍ୟ ସମାଜ ଅଭୂତପୂର୍ବ ବୈଜ୍ଞାନିକ ଶକ୍ତିରେ ନୂତନ ଆକାର ଧାରଣ କରୁଛି—ମଣିଷ ଅସୀମ ଶକ୍ତିର ଅଧିକାରୀ ହୋଇ ପାରୁଛି—ଯେଉଁ ପୃଥିବୀର ପର୍ଯ୍ୟବେକ୍ଷଣ କଥା ଦିନେ କଳ୍ପନାତୀତ ଥିଲା ତାକୁ କେଇଟା ଘଣ୍ଟାରେ ଘୂରି ଆସି ପାରୁଛି । ଗୋଟିଏ ଜାଗାରେ ବସି ପୃଥିବୀର ପ୍ରତ୍ୟେକ କଣର ବାର୍ତ୍ତା ପାଇ ପାରୁଛି—ଦୂରବୀକ୍ଷଣ ସାହାଯ୍ୟରେ ଲକ୍ଷ କୋଟି କୋଶ ଦୂରରେ ଥିବା ଜ୍ୟୋତିଷ୍କମାନଙ୍କୁ ଦୃଷ୍ଟିପଥକୁ ଆଣି ପାରୁଛି

ଓ ଅଣୁବୀକ୍ଷଣ ସାହାଯ୍ୟରେ କ୍ଷୁଦ୍ରାଦପି କ୍ଷୁଦ୍ର ଅଣୁ ପରମାଣୁକୁ ସୁଦ୍ଧା ଆୟତ୍ତାଧୀନ କରି ପାରୁଛି । ଏହି ଅଦ୍ଭୁତ ବିଜ୍ଞାନ ବଳରେ ଅପଶ୍ଚିମ ପୃଥିବୀ ଶ୍ରେଷ୍ଠ ହୋଇ ପଡ଼ିଛି ଓ ଅକଳ୍ପନ ମାନବ ଟେକ୍ ବଡ଼ ହୋଇ ଉଠିଛି । ଜୀବନ ପ୍ରବାହର ଏ ଦିଗଟି ଅତ୍ୟନ୍ତ ସୁନ୍ଦର ଯେ ଜାତି ତାଳ ପକାଇ ଚାଲି ପାରୁଛି ସେ ସଭ୍ୟ, ଶିକ୍ଷିତ ଓ ସଂସ୍କୃତ ବୋଲି ପରିଚିତ; ଆଉ ଯେ ଖାଲି ପଛକୁ ଚାହୁଁଛି ସେ ଅସଭ୍ୟ, ଦୁର୍ବଳ ଓ ପଶ୍ଚାତ୍ ଜାତି ଭାବରେ ପଛରେ ପଡ଼ି ରହିଛି । ତାର ଶରୀର ବଳହୀନ, ମନ ଅବସାଦଗ୍ରସ୍ତ ଓ ସମାଜ ଧର୍ମ ଶୂନ୍ୟ ହେତୁ ଧ୍ୱସ୍ତପ୍ରାୟ । ପ୍ରବାହ ହୀନ ଜଳର ଦୁର୍ଗନ୍ଧ ଆବର୍ଜନାମୟ ଗର୍ତ୍ତ ମାଛ ସବୁ ଯେପରି ସ୍ରୋତର ଚଞ୍ଚଳତାର ସ୍ୱାଦ ଉପଭୋଗ କରିପାରେ ନା ସେପରି ଏମାନେ ଜୀବନସ୍ରୋତର ଉଦ୍ଦାମତା ଅନୁଭବ କରି ପାରନ୍ତି ନାହିଁ । ତେଣୁ ଇତିହାସ ରଚନା କରିବାରେ ଏମାନଙ୍କର ଅଧିକାର ନାହିଁ । ଘଣ୍ଟାରେ ୬୦୦ ମାଇଲ ବେଗରେ ଗତି କରୁଥିବା ବ୍ୟୋମଯାନଗୁଡ଼ିକର ଉଦ୍ଭାବ ଓ ଦାୟିତ୍ୱ ଯାତ୍ରାରେ ହାତଠେଲା ଗାଡ଼ି ଚଳାଉଥିବା ଲୋକର ଦାୟିତ୍ୱଠାରୁ ଯେ ଅନେକ ବେଶି ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ବୈଜ୍ଞାନିକଯୁଗରେ ଯେଉଁମାନେ ଇତିହାସ ଗଢ଼ୁଛନ୍ତି ସେହିମାନେ ବଳିଷ୍ଠ ମନୋଭାବସମ୍ପନ୍ନ ଓ ଅନାଗତ ଭବିଷ୍ୟତର ସୁଯୋଗ୍ୟ କର୍ଣ୍ଣଧାର । ଯେଉଁମାନେ ରକ୍ଷଣଶୀଳ ମନୋବୃତ୍ତି ନେଇ ଖାଲି ଅତୀତକୁ ଜାବୁଡ଼ି ଧରିଛନ୍ତି, ଯୁଗର ଗତିଶୀଳ ରଥଚକକୁ ପୁଣି ପଛକୁ ଫେରାଇ ନେବାର ପ୍ରୟାସ କରୁଛନ୍ତି, ସେମାନେହିଁ ବର୍ତ୍ତମାନ ଯୁଗଧର୍ମ ଅନୁସାରେ ଅଧର୍ମୀ । ସେମାନେ ଯେତେ ଚେଷ୍ଟା କଲେ ସୁଦ୍ଧା ମନୁଷ୍ୟସମାଜ କେବେ ବି ପୁଣି ପଛକୁ ଫେରି ପାରିବ ନାହିଁ । ଅତୀତ ଯୁଗର ରକ୍ଷଣଶୀଳମାନଙ୍କ ପକ୍ଷ

ଏମାନଙ୍କର ଅସ୍ତିତ୍ୱ ପରିଲକ୍ଷିତ ହେବ । କିନ୍ତୁ ତା ପୂର୍ବରୁ ସେମାନେ ମାନବସମାଜର ପ୍ରଭୂତ କ୍ଷତି କରି ଦେଇ ପାରନ୍ତି—କୋଟିଏ ଜୀବ ସେମାନଙ୍କ ଅଯୋଗ୍ୟ ଧାରଣାନୁଯୁକ୍ତ ଭୋଗ କରାଇ ଯାଇ ପାରେ । ଅବଶ୍ୟ ଏମାନଙ୍କର ସୃଷ୍ଟି ଯେ ବର୍ତ୍ତମାନ ବୈଜ୍ଞାନିକ ପ୍ରଗତି ଇତ୍ୟାଦି ସହିତ ଗଭୀର ସମ୍ପର୍କ ମଧ୍ୟ ରଖିଛନ୍ତି । କଳ୍ପନାସୃଷ୍ଟ ଅଜାତର ଘଟଣାବଳୀ ତଥା ଇଙ୍ଗିତର ବଳ ଏମାନେ ପୂର୍ଣ୍ଣ ନେଇ ସମ୍ଭାବ୍ୟଙ୍କୁ ପୋଷଣ କରିବାକୁ ଚାହାନ୍ତି । ପ୍ରଥମତଃ ଅତୀତରେ ସମ୍ଭାବ୍ୟ ନ ଥିବା, ଚାଲି ଉନ୍ନତିମୁଖୀ ପରଜୀବ ଲୋକଙ୍କ ରଙ୍ଗୀନ ଚଷମା ଭିତର ଦେଇ ଏହା ଦେଖା ଦେଇଥାଏ । ଦ୍ୱିତୀୟତଃ ଆଧୁନିକ ଯୁଗର ଚୋରାଚାଲାଣ ଏମାନଙ୍କ ଆଖିରେ ଅତିରଞ୍ଜିତ ହୋଇ ଦେଖାଦିଏ ଓ ତାହାର ଉଗ୍ରକାଣ୍ଡତା ଏମାନେ ଭୁଲି ପାରି ନ ପାରନ୍ତି । ନିରାଶବାଦୀ ହୋଇ ଥିବାରୁ ଭବିଷ୍ୟତ ପ୍ରତି ଆଶା ନ ଥାଏ ଏବଂ ଦୁର୍ବଳମନୋଭାବସମ୍ପନ୍ନ ହୋଇଥିବାରୁ ନିଜ ପ୍ରତି ତଥା ମାନବ-ସମାଜ ପ୍ରତି ଆସ୍ଥା ବହୁତ କମ୍ ଥାଏ ।

ଆଧୁନିକ ବୈଜ୍ଞାନିକ ଯୁଗର କୁଫଳ ଯେ ନାହିଁ ତାହା କହିବା ଭୁଲ । କିନ୍ତୁ ସୁଫଳ ମଧ୍ୟ କମ୍ ନାହିଁ । ସୁଫଳ ଓ କୁଫଳର ଅନୁପାତ ଦେଖିବା ଜଟିଳ । ତା ଛଡ଼ା ଯେଉଁ ମନୁଷ୍ୟ ବୈଜ୍ଞାନିକ ପ୍ରଣାଳୀରେ ଏତେ ବଡ଼ ପ୍ରାକୃତିକ ଶକ୍ତିକୁ ନିଜ ଆୟତ୍ତାଧୀନ କରିପାରିଛି ସେହି ମନୁଷ୍ୟ ବର୍ତ୍ତମାନ ଯୁଗର କୁଫଳକୁ ମଧ୍ୟ ନିୟନ୍ତ୍ରିତ କରି ପାରେ । ସେ କୁଫଳ ଯେ ରକ୍ଷଣଶୀଳ ମନୋବୃତ୍ତି, ନାନା ପ୍ରକାର ବ୍ୟକ୍ତିଗତ ଓ ଜାତିଗତ ଭେଦାଭେଦ ଓ ସଂକୀର୍ଣ୍ଣତା ଏବଂ ମୁଷ୍ଟିମେୟ ସ୍ୱାର୍ଥପର ଲୋକଙ୍କର ଅବୈଧାନିକ ଶୋଷଣ ନୀତି ଓ ଅଭିଳାଷ ଲୋଭ ଯୋଗୁଁ ବର୍ତ୍ତମାନର ମାନବସମାଜର ବହୁତ

ଶକ୍ତି ଉତ୍ପାଦକ ମାର୍ଗରେ ପରିଚାଳିତ ହୋଇ ପାରୁନାହିଁ । ପୁରାତନ ଯୁଗ ସମାଜପଦ୍ଧତିର ଗଣ୍ଡି ଭିତରେ ନୂଆ ଯୁଗର ଅନୁଭୂତି ଖାପ ଖାଉ ନାହିଁ, ତେଣୁ ସମାଜ ଭିତରେ ଅନେକ ପ୍ରକାରର ଅସନ୍ତୋଷ ଶକ୍ତି କାର୍ଯ୍ୟ କରୁଛି ଏବଂ ସେଥିଲାଗି ଏକ ସ୍ଥଳରେ ଦ୍ରବ୍ୟ ଉତ୍ପାଦନ ସତ୍ତ୍ୱେ ହେଉଥିବାବେଳେ ଅନ୍ୟ ସ୍ଥଳରେ ଲୋକେ ଅଭାବରେ ମରୁଛନ୍ତି — ପୃଥିବୀର ସର୍ବଶ୍ରେଷ୍ଠ ଧନ ଭଣ୍ଡାର୍ ଦୁଆର ମୁହଁରେ ଲୋକେ ଅନ୍ନ ନ ପାଇ ପଥଘାଟରେ ଅଚଳ ଅଚଳ ହୋଇ ଲଟପଟ ହେଉଛନ୍ତି — ଆମେରିକାରେ କୋଟି କୋଟି ମହଣ ଗହମ ପୋଡ଼ା ହେଉଥିବାବେଳେ ଆଉ ଗୋଟିଏ ଦେଶରେ ଲୋକେ ପେଟକୁ ନ ପାଇ ମରୁଛନ୍ତି, କିନ୍ତୁ ଆମେରିକାରୁ ସେହି ଦେଶକୁ ଆସିବା ଲାଗି ହୁଏତ ମାତ୍ର କେଇଟା ଘଣ୍ଟା ଲାଗୁଛି । ଏହି ସମସ୍ୟା ସମାଜର ଅଚଳ ଉନ୍ମୂଳନ ଏବଂ ସେ ସବୁର ନବୀକରଣ କେବଳ ସଂଗ୍ରାମ ସାହାଯ୍ୟରେ ହିଁ ହୋଇ ପାରିବ । ଗତି କରୁଥିବା ଲୋକେ ପଥ କେଉଁଠି ପ୍ରତିବନ୍ଧକ ସାମନାରେ ଆସି ଠିଆ ହୁଏ, ତାକୁ ଆଘାତ ଶକ୍ତି ଲଗାଇ ଦୂରକୁ ଠେଲି ଆଗକୁ ଚାଲିବାରେ ଯିବା ମରଣ — ସମାଜରୁ ତ୍ୟାଗ — ଅବ୍ୟବହାର ପରିଣାମ, କିନ୍ତୁ ତାକୁ ହଟି ଆସିଲେ ତ ବାଧା ନୁହେଁ । ସେଥିରେ ପରିଣାମ ମୃତ୍ୟୁ ଓ ଗତ୍ୟନ୍ତର ଚରମ ଅବନତି ନୁହେଁ କି ?

•

ପ୍ରତ୍ୟେକ ଯୁଗ ପୂର୍ବବର୍ତ୍ତୀ ଯୁଗର ପରିସ୍ଥିତିର ବିରୁଦ୍ଧାଚରଣ ଶକ୍ତିର ସଂଘାତଜନିତ ସମାଧାନ ବା ଉତ୍ତରଣକରୁହିଁ ଜନ୍ମେ । ଏହା ପ୍ରଗତିର ପ୍ରତୀକ ରୂପେ ସମ୍ମାନିତ ହୋଇଥାଏ ଏବଂ ତାହା ମଧ୍ୟ ଅବସ୍ଥାନ୍ତରେ ସେହିପରି ଭାବରେ ଅନ୍ୟ ଏକ ଯୁଗରେ ପରିଣତ ହୁଏ । ଏହିପରି ମାନବସଭ୍ୟତା ଅଗ୍ରଗତି ଘଟିଥିବା ବରଫ

ଦେଖୁଥିବା ଦଣ୍ଡ ଅନବରତ ଚାଲିଛି । ସେ ନୂତନଙ୍କର ମାଧୁର୍ଯ୍ୟ ପାଉଛନ୍ତି ସେ କେତେବେଳେ ପଛକୁ ଫେରି ଚାହିଁବ ନାହିଁ । ଆଧୁନିକ ଯୁଗର ବନ୍ଧନ ସେ ନୂତନଙ୍କର ଆସ୍ୱାଦ ପାଇ ସାରିଛି—ମନୁଷ୍ୟ ନିଜେ ସୃଷ୍ଟି କରି ତୃପ୍ତିକର ଆନନ୍ଦ ପାଇ ସାରିଛି । ତେଣୁ ଆଧୁନିକ ଯୁଗଧର୍ମ ମନୁଷ୍ୟସମାଜର ଜଗତ ଶକ୍ତି ଓ ତତ୍ତ୍ୱର ଆତ୍ମବିଶ୍ୱାସରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବାକୁ ଚାହୁଁଛି—ଭଗବାନଙ୍କ ସୃଷ୍ଟିର ନବବୋଧର ସତ୍ତା ସେ ଉଡ଼ାଇ ଦେବାକୁ ବସିଛି । ଜନ ସତ୍ତା – ମାନବସମାଜ ସତ୍ତା—ଆଜି ତାହାଙ୍କ ଉପରେ ଆସ୍ଥା ରଖିବାରେ ସେ ବଦଳେ ଉତ୍ସୁକ ନୁହେଁ । ଯଦି ଭଗବାନ ଥାଏ ତା ହେଲେ ତାକୁ ସ୍ୱର୍ଗ ବାହାରେ ନାହିଁ ଏବଂ ଯଦିବା ବାହାରେ କେଉଁଠି ଅଛି, ତା ସହିତ ତା'ର ଯୋଗସୂତ୍ର ନାହିଁ ତେଣୁ ତାକୁ ଜାଣିବାର ଆଗ୍ରହ ନାହିଁ । ବର୍ତ୍ତମାନ ବୈଜ୍ଞାନିକ ବିଶ୍ଳେଷଣରେହିଁ ତା'ର ସତ୍ୟସ୍ୱରୂପପୋଷୀ ସମାଜ, ଜଗତର ବୈଜ୍ଞାନିକ ସମାଧାନରେହିଁ ତାର ମୁକ୍ତି । ସମାଧାନ ଅନ୍ୱେଷଣ ନୁହେଁ—ତାହା ଆଲୋଚନା ସତ୍ୟ –ଦେଶକାଳପାତ୍ର ଓ ସମାଜର ସମନ୍ୱିତ ଉନ୍ନୟନ ମାତ୍ର । ଅବସ୍ଥାନ୍ତରେ ସେ ପ୍ରୀତି ବଦଳିବ ଏବଂ ତାର ରୂପ ବଦଳାଇବ ମନୁଷ୍ୟ । ମନୁଷ୍ୟ ସତ୍ୟର ସୃଷ୍ଟିକର୍ତ୍ତା, ଧର୍ମର ଜନ୍ମଦାତା; ତେଣୁ ଧର୍ମ ଓ ସତ୍ୟ ଯୁଗ ଯୁଗ ଧରି ଅପରିବର୍ତ୍ତନ ହୋଇ ରହି ନାହିଁ । ଏଥିରେ ମନୁଷ୍ୟର ତେଣୁ ଜଗତର ଆତ୍ମବିଶ୍ୱାସ, ବଳିଷ୍ଠ ମନୋଭାବ ଏବଂ କର୍ତ୍ତବ୍ୟନୂତନ ମୁକ୍ତି ଲାଗି ଯେଉଁ ଉଦ୍ୟମ ଉତ୍ସାହ ଓ ଜଗତ ଆଶା ରହିଛି ତାହା ଅନ୍ୟ କୌଣସି ପଶ୍ଚାତ୍‌ମୁଖୀ ଧର୍ମ ମତରେ ନାହିଁ । ତେଣୁ ବର୍ତ୍ତମାନର ଯୁଗଧର୍ମ ଅତୀତ ଧର୍ମଠାରୁ ଅଲଗା—ଏଥିରେ ଜାତି ନାହିଁ, ତଥାକଥିତ ଧର୍ମଭେଦ ନାହିଁ—ବର୍ଣ୍ଣଗତ ପାର୍ଥକ୍ୟ ନାହିଁ

ଜ ମ ଜର୍ମ୍ମ ଚେକୋସ୍ଲୋଭାକିଆ ନାହିଁ—ଏହି କ୍ଷୁଦ୍ର ପୃଥିବୀର ୨୨୫ କୋଟି ନରନାରୀ ଏକ ଧର୍ମାବଲମ୍ବୀ—ଏକ ନୂତନ ସମାଜ ଅନ୍ତର୍ଭୁକ୍ତ ଏବଂ ଏକ ସାର୍ବଜନୀନ ମୈତ୍ରୀ ସୂତ୍ରରେ ଅନୁପ୍ରାଣିତ। ଏହାହିଁ ହେଉଛି ବର୍ତ୍ତମାନ ବୈଜ୍ଞାନିକ ଯୁଗର ଯୁଗଧର୍ମ। ଯେଉଁମାନେ ଏହି ଧର୍ମର ସ୍ରୋତ ମୁଖରେ ମୁଣ୍ଡ ଟେକି ଆଗେଇ ଯିବେ ସେହିମାନେ ବଞ୍ଚି ପାରିବେ ଏବଂ ଯେଉଁମାନେ ଏହାକୁ ସୃଷ୍ଟି କରିବେ—ଯୁଗଧର୍ମ ପ୍ରତି ଅନାସ୍ଥା ଦେଖାଇବେ, ସେମାନେ ନଷ୍ଟ ହୋଇ ଯାଇପିବେ।

# ସାହିତ୍ୟର କ୍ରମବିକାଶ

ବହୁ ଐତିହାସିକ, ନୃତତ୍ତ୍ୱବିତ୍ ଓ ସମାଜ ତତ୍ତ୍ୱବିତ୍ଙ୍କ ମତରେ କୌଣସି ଦେଶର ସାହିତ୍ୟ, କଳା, ବିଜ୍ଞାନ ପ୍ରଭୃତି ସାଧାରଣ ସାଂସ୍କୃତିକ ଅନୁଷ୍ଠାନ ସବୁ ସେ ଦେଶର ଅର୍ଥନୈତିକ ତଥା ସାମାଜିକ ଗଠନ ଓ ଶ୍ରେଣୀବିଭାଗ ଉପରେ ନିର୍ଭର କରିଥାଏ । ଯେଉଁ ସମାଜ ଯେତେ ବେଶି ଶ୍ରେଣୀସଂଘର୍ଷରହିତ ଓ ବଳବାନ, ତାର ସଭ୍ୟତା ସେତେ ବେଶି ଉନ୍ନତ ଏବଂ ଜନମନ ଅଧିକମାତ୍ରାରେ ସମଷ୍ଟିଗତ ଜୀବନକୁ ଅନୁପ୍ରାଣିତ କରିପାରେ । ଆଦିମ ଯୁଗର ବଣମଣିଷ ଓ ବର୍ତ୍ତମାନ ଦକ୍ଷିଣ ଆଫ୍ରିକା, ଅଷ୍ଟ୍ରେଲିଆରେ ଥିବା କେତେକ ଆଦିବାସୀମାନଙ୍କ ମଧ୍ୟରେ କୋଟିଏ ପ୍ରାଚୀନ ବାସିନ୍ଦା ମାନେ ଅନ୍ୟ ପ୍ରାଚୀନ ଲୋକମାନଙ୍କର ଆଚରଣ ଭଳି ଚାଲିଚଳଣ ଦେଖୁଥିଲେ ସୁଦ୍ଧା ସେମାନଙ୍କ ଭିତରେ ପ୍ରାୟ ଅଧିକ ଶ୍ରେଣୀହୀନ ସମାଜ ଥିବାର ଜଣାଯାଏ । ଏ ପ୍ରକାର ସମାଜରେ ଶ୍ରେଣୀବିଭାଗ ଦରକାର ନାହିଁ । ଶିକାର କରିବା, ଫଳ ଗୋଟାଇବା ଓ ବାହାରର ଆକ୍ରମଣରୁ ନିଜକୁ ରକ୍ଷା କରିବାରେ ସମଷ୍ଟିଗତ ଜୀବନର ପ୍ରୟୋଜନୀୟତା ବେଶି । ତେଣୁ ସମସ୍ତେ ମିଳିମିଶି ଯେପରି କାମ କରୁଥିଲେ ସେମାନଙ୍କର କଳା, ପ୍ରସ୍ତର ଉପରେ ଖୋଦିତ ଚିତ୍ର ଓ ପଶୁପକ୍ଷୀ ଅନୁକରଣରେ ନୃତ୍ୟଗୀତରେ ସେପରି ଗୋଟିଏ ସମଷ୍ଟିଗତ ସୂତ୍ର ଦେଖାଯାଏ । ନିଜଠାରୁ ପ୍ରକୃତିକୁ ପୃଥକ୍ କରି ଦେଖି ତାକୁ ନିଜର ଆୟତ୍ତାଧୀନ କରିବାର ଶକ୍ତିର ଆବିର୍ଭାବ ହୋଇ ନ ଥିବାରୁ ସେହି ସରଳ ଭାବରେ ପ୍ରକୃତି ସହିତ ମିଳିମିଶି ସେମାନେ ଯେତେବେଳେ ଏକାଠି କାମ କରୁଥିଲେ, ସେହି ସମଷ୍ଟିଗତ କ୍ରିୟାର ଛନ୍ଦରୁ

ପ୍ରଥମ ସର୍ତ୍ତଟିଏ ସୃଷ୍ଟି । ଏ ପ୍ରକାର ସୃଷ୍ଟିପ୍ରକୃତି ସହିତ ସଂସ୍କୃତିର ଉଚ୍ଚ ସ୍ତର ସମସ୍ତ ସମାଜକୁ ଅନୁପ୍ରାଣିତ କରିପାରୁଥିବ; କାରଣ ପ୍ରତ୍ୟେକ ଅନୁଭୂତି ଓ ପ୍ରତ୍ୟେକ ଶତାବ୍ଦୀର ଜୀବନର ଦୈନନ୍ଦିନ କାର୍ଯ୍ୟକଳାପ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ରହିଥିବ । ସମସ୍ତେ ସମସ୍ତଙ୍କୁ ବୁଝିପାରୁଥିବେ—ସେମାନଙ୍କ ଭିତରେ କୌଣସି ପ୍ରକାର ଅର୍ଥନୈତିକ ତଥା ସାମାଜିକ ପାର୍ଥକ୍ୟ ନ ଥିବାରୁ ବୌଦ୍ଧିକ କିମ୍ବା ମାନସିକ କ୍ଷେତ୍ରରେ କୌଣସି ବ୍ୟକ୍ତିର ଦାବି ଗ୍ରାହ୍ୟ ନ ଥିବ କହିଲେ ଚଳେ ।

ଅବଶ୍ୟ ଏ ଧରଣର ସମାଜରେ ମଧ୍ୟ, ସାହିତ୍ୟ ପ୍ରଭୃତି ମାନବର କଳା-କୌଶଳର ପୃଥକ୍ ଧାରା ହୋଇ ନ ଥିବାରୁ ଓ ମନୁଷ୍ୟ ପ୍ରକୃତିକୁ ସମ୍ପୂର୍ଣ୍ଣଭାବେ ନିଜର ଆୟତ୍ତାଧୀନ କରି ନ ପାରିଥିବାରୁ ପ୍ରକୃତିର ଅନ୍ଧ ନିୟମର ସମ୍ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରି ନେଇଥିବ । ତାର ସ୍ୱାଧୀନତା ବହୁତ ସୀମାବଦ୍ଧ ଥିବ । ନିଜକୁ ବାହ୍ୟ ଜଗତଠାରୁ ପୃଥକ୍ ଭାବରେ ଦେଖି ଓ ତାକୁ ନିୟନ୍ତ୍ରଣ କରି ନିଜର ସୁବିଧା ଅନୁସାରେ ନିୟୋଗ କରିପାରିବାରେ ହିଁ ପ୍ରକୃତ ମଣିଷର ମୁକ୍ତି—ସେଥି ସାଙ୍ଗେ ସାଙ୍ଗେ ସଭ୍ୟତାର ସମସ୍ୟା; କାରଣ ସେ ଯୁଗରେ ଶ୍ରେଣୀଭେଦର ପ୍ରଶ୍ନ ନ ଥିଲା କହିଲେ ଚଳେ ଏବଂ ସାହିତ୍ୟ ( ସାହିତ୍ୟ କହିଲେ କେବଳ ସଙ୍ଗୀତକୁ ବୁଝାଯିବ ଏ ଯୁଗରେ ) ମୂଳତଃ କାମ କରୁଥିବା ଅବସ୍ଥାରେ ମନୁଷ୍ୟର ଅନ୍ତଃକରଣର ସ୍ପନ୍ଦନର ତାଳ ରୂପରେ ହିଁ ଝଙ୍କାର କରୁଥିଲା । ଶାରୀରିକ କାର୍ଯ୍ୟକଳାପ ସଙ୍ଗେ ସଙ୍ଗୀତର ଅବିଚ୍ଛେଦ୍ୟ ସମ୍ପର୍କ ଏ ପ୍ରକାର ସମାଜରେ କେବଳ ଦେଖିବାକୁ ମିଳେ—କଳ୍ପନାର ଖୁବ୍ ବେଶି ବିକାଶ ହୋଇଥିଲା ବୋଲି ମନେ ହୁଏ ନାହିଁ ।

ଯନ୍ତ୍ର ମନୁଷ୍ୟ କ୍ରମେ ସ୍ୱତଚାଳିତ ଯନ୍ତ୍ର ସାହାଯ୍ୟରେ ସୃଷ୍ଟି କରିବାକୁ ଶିଖିଲା ଓ ତାର ସଭ୍ୟତାର କ୍ରମବିକାଶ ସେହି ନୂତନ ଉତ୍ପାଦନ-ପ୍ରଣାଳୀ ଉପରେ ନିର୍ଭର କଲା। ନିଜ କୌଶଳରେ ଖାଦ୍ୟଦ୍ରବ୍ୟ ଉତ୍ପାଦନ କରିପାରିବାରୁ ନିଜ ଶକ୍ତି ଉପରେ କ୍ରମେ ଆସ୍ଥା ଆସିଲା ଓ ନିଜକୁ ପ୍ରକୃତିଠାରୁ ସ୍ୱତନ୍ତ୍ରଭାବେ ଦେଖିବାକୁ ଶିଖିଲା। କୃତ୍ରିମ ଉପାୟରେ ଖାଦ୍ୟ ଉତ୍ପାଦନ କରି ଜଡ଼ ପ୍ରକୃତିର ଅଧୀନତ୍ୱରୁ ନିଜକୁ ମୁକ୍ତ କଲା ପରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟର ଆରମ୍ଭ ହୋଇଲା ଓ ସେହି ସ୍ୱାତନ୍ତ୍ର୍ୟର ଉତ୍କର୍ଷର ବୃଦ୍ଧି ଲାଗି ବେଶି ଉତ୍ପାଦନ କରିବାରେ ପ୍ରବୃତ୍ତି ହେଲା। ତେବେ ନିଜ ଶାରୀରିକ କ୍ଷମତା ବୁଝିବାରେ ଅନ୍ୟମାନଙ୍କ ଶ୍ରମଜାତ ଫଳରୁ କିଛି ଆତ୍ମସାତ୍ କରି କୃଷିଜାତ ଫଳ ଅଧିକ ପରିମାଣରେ ସଞ୍ଚୟ କରିବା ହେଲେ ସେହି ଶାସକଶ୍ରେଣୀରେ ପରିଣତ ହେଲେ। ମାନବ ସମାଜରେ ଶ୍ରେଣୀଗତ ପାର୍ଥକ୍ୟ ଦେଖାଦେଲା। ଅର୍ଥନୈତିକ ତାରତମ୍ୟ ରାଜନୈତିକ ଦଳାଦଳି ସୃଷ୍ଟି କଲା। ସଭ୍ୟତା ମଧ୍ୟ ସେହି ପରିମାଣରେ ବିଭିନ୍ନ ରୂପ ଧାରଣ କଲା। ମୂର୍ତ୍ତି ଏ ଯୁଗର ପ୍ରଧାନ ସାହିତ୍ୟ। ମନୁଷ୍ୟ ନିଜ ରୂପରେ ପ୍ରକୃତିକୁ ଗଢ଼ିବାକୁ ଚେଷ୍ଟା କଲା। ମାଟି ଖୋଳି ଭୂମିଚଷ କରିବା ଓ ବର୍ଷା ପାଣିକୁ ଖାଲ ଗାତରେ ଅଟକାଇ ରଖିବାରେ ଯେଉଁ ଆକ୍ରମଣମୂଳକ ପ୍ରବୃତ୍ତି ମନୁଷ୍ୟ ମନରେ ଦେଖାଦେଇଥିଲା, ତାହା କ୍ରମେ ବିଭିନ୍ନ ଢଙ୍ଗରେ ଆତ୍ମପ୍ରକାଶ କଲା। ପୁରାଣର ଇନ୍ଦ୍ର, ବରୁଣ, କୁବେର ଓ ଅନ୍ୟାନ୍ୟ ଲକ୍ଷ ଲକ୍ଷ ଦେବଦେବୀ ମାନବ କଳ୍ପନାର ପରିବର୍ତ୍ତିତ ଓ ଅତିରଞ୍ଜିତ ମନୁଷ୍ୟର ପ୍ରତିମାନ। ଶାସକଶ୍ରେଣୀ ଅନ୍ୟର ଶ୍ରମଫଳାଂଶ ଆତ୍ମସାତ୍ କରି ଅଳସୀ ହୋଇ ବସିବା ଦ୍ୱାରା ବାହ୍ୟ କର୍ମକ୍ଷେତ୍ରରୁ ସମ୍ପୂର୍ଣ୍ଣ ଅଲଗା ହୋଇଗଲେ ଓ ବାସ୍ତବତା ସହିତ

ହେ କୌଣସି ପ୍ରକାରର ଉଚ୍ଚ ଜାତି ଅନ୍ତର୍ଗତ ଏହାରଗାଂଶକ ନାହିଁ । ସେଥିଲାଗି ଦେବତା ଓ ଧର୍ମଶାସ୍ତ୍ରର ଅନୁମୋଦନ ଓ ଆଦେଶ ହେଲା । ରାଜାମାନେ ଦେବତାଙ୍କ ବଂଶଧର ସ୍ୱରୂପ ନରରୂପରେ ଶାସନ କଲେ – ଲୋକମାନେ ସେମାନଙ୍କୁ ଈଶ୍ୱରେ ପୂଜା କଲେ; ଯୋଦ୍ଧାଗଣ ଦରବାରର ଶଣ୍ଟପୂତା ପ୍ରତିପାଦନ କଲେ । ରାଜା ଜମିଦାନ ଦେଇ ପଣ୍ଡିତମାନଙ୍କୁ ନିଜ ସଭାରେ ରଖିଲେ—ସେମାନେ ପାଣ୍ଡିତ୍ୟ ଦେଖାଇଲେ—ସ୍ତୁତି ଦେଇ ଚାର୍ଣ୍ଣ ସୂତ୍ରଧାର ଚାଳିଲେ । ସୂତ୍ରଧାର ସେମାନଙ୍କର ଆତ୍ମସନ୍ତୋଷ ନିମିତ୍ତେ ବର୍ଣ୍ଣର କଥା—ଦେବ ଶାସକଙ୍କର ସ୍ତବଗାନ, ରାଜପୁତ୍ର ଓ ରାଜକନ୍ୟାର ପ୍ରେମ, ଇତ୍ୟାଦି. ସାହିତ୍ୟର ମୂଳବସ୍ତୁ ହେବା ସ୍ୱାଭାବିକ । ମୋଟାମୋଟି ସମସ୍ତ ଗାନ, ଦର୍ଶନ, ସାହିତ୍ୟ ସଙ୍ଗୀତ, କଳାଶିଳ୍ପ —ଏହି ମୁଷ୍ଟିମେୟ ନରନାରୀ ଦେବତାଙ୍କ ଦାସ ସ୍ୱୀକୃତ ହେଲା । ସାହିତ୍ୟ ସଜୀବ ଜନସମ୍ପ୍ରଦାୟରୁ ବିଚ୍ଛିନ୍ନ ହୋଇପଡ଼ିଲା । ସମ୍ଭବତଃ ଭୋଗୋପଯୋଗୀ ହୋଇ ରୂପ ପାଇଥିଲେ ହେଁ ତାହା ସେହି ଯୁଗର ଶାସକଶ୍ରେଣୀ ଦ୍ୱାରା ଉଦ୍ଭାବିତ ବୋଲି ଧରିବାକୁ ହେବ । ଅବଶ୍ୟ ଏହାର ଯେ ମୂଲ୍ୟ ନାହିଁ ତା ନୁହେଁ—ସେ ଯୁଗ ଯୁଗର ସାହିତ୍ୟଠାରୁ ଅନେକ ଉନ୍ନତ ।

ଏ ଯୁଗର ପୁରାଣ, ଭାଗବତ ଧର୍ମଶାସ୍ତ୍ର ପ୍ରଭୃତି ପରବର୍ତ୍ତୀ କାଳର ଜନଜୀବନରେ ବାଧାସୃଷ୍ଟି କଲା । ଯାହା ଏକଦା ସଭ୍ୟତା ସୃଷ୍ଟି କରିଥିଲା, ତାହା ପରବର୍ତ୍ତୀକାଳରେ ପ୍ରତିବନ୍ଧକ ହୋଇ ଛିଡ଼ା-ହେଲା । ଜନତାର ରକ୍ଷଣ ଲାଗି ନୂତନ ଆନ୍ଦୋଳନକୁ ଦୂରରେ ରଖିବାକୁ ଚେଷ୍ଟା ହେଲା; ତଥାପି ନୂତନ ଜୀବନର ଗତିରୋଧ ହୋଇ ପାରିନା ନାହିଁ ।

ଯେଉଁ ଦେଶରେ ବିଜ୍ଞାନର ଉନ୍ନତି ହୋଇନାହିଁ, ଯେଉଁ ଦେଶର ଉତ୍ପାଦନ ପ୍ରଣାଳୀ ସେହି ଆଦିମ ଅବସ୍ଥାରେ ରହିଛି ଓ ଯେଉଁ ଦେଶ ବର୍ତ୍ତମାନ ସୁଦ୍ଧା ପୁରାତନ ଭାବଧାରର ରାଜା ଓ ସାମନ୍ତ-ଶ୍ରେଣୀ ଦ୍ୱାରା ପରିଚାଳିତ, ସେଠାରେ ପୌରାଣିକ ତଥା ଅଦୃଷ୍ଟରେ ବଦ୍ଧ ଭାବନାର ଓ ପ୍ରଚାରର କଳାରେ ସାହିତ୍ୟ ବର୍ତ୍ତମାନ ସୁଦ୍ଧା ପ୍ରଭାବିତ ହୋଇଆସୁଛି । ବିଜ୍ଞାନର ଉନ୍ନତ ଉତ୍ପାଦନ ପ୍ରଣାଳୀରେ ବୈପ୍ଳବିକ ପରିବର୍ତ୍ତନ ଆଣେ ଓ ସେଥି ସଙ୍ଗେ ସଙ୍ଗେ ସାମାଜିକ ଶ୍ରେଣୀଗୁଡ଼ିକର ଓ ସମ୍ପର୍କ ବଦଳିଯାଏ । ସାହିତ୍ୟ ମଧ୍ୟ ଅନ୍ୟ ରୂପ ଧାରଣ କରେ ।

ସାମନ୍ତ-ଯୁଗରେ କେତେକ ମଧ୍ୟଶ୍ରେଣୀ ସ୍ୱାଧୀନଚେତା ମନୀଷୀ ଶାସକ ଶ୍ରେଣୀର ଅତ୍ୟାଚାରରେ, ଅନ୍ଧ ଗୋଡ଼ାମିର ଶାସନରେ ଅତୁଳ ପରିଶ୍ରମ କରି ବିଜ୍ଞାନର ଅଗ୍ରଗତି କରାଇବାରେ ସମର୍ଥ ହୋଇପାରିଲେ । ଉକ୍ତ ଯୁଗର ସମାପ୍ତିକାଳ ସାମନ୍ତବାଦର ଅକୃତ-କାର୍ଯ୍ୟତା ଓ ସେଥିଲାଗି ସଙ୍କଟ ଜାତ ହେବା ମୂଳରେହିଁ ବିଜ୍ଞାନର ମୁକ୍ତିଥିଲା । ବିଜ୍ଞାନର ପ୍ରଗତି ଫଳରେ ମନୁଷ୍ୟ ପୌରାଣିକ ଦେବ-ଦେବୀ ମନ୍ତ୍ରତନ୍ତ୍ର ଓ କୁସଂସ୍କାର ବିରୁଦ୍ଧରେ ଅଭିଯାନ ଆରମ୍ଭ କଲା ଓ ସେଥି ସଙ୍ଗେ ସଙ୍ଗେ ନୂତନ ଯୁଗର ସ୍ୱାଧୀନତା ଲଢ଼ି ଅଭ୍ୟୁଦୟ ସୂଚିତ ହେଲା । ବୈପ୍ଳବାନୁପ୍ରାଣିତ ଲେଖକମାନେ ସାହିତ୍ୟ-ଜଗତରେ ମଧ୍ୟ ବିଦ୍ରୋହ ଘୋଷଣା କଲେ । ଅତ୍ୟାଚାରୀ ସାମନ୍ତ-ଶ୍ରେଣୀ ଓ ସେମାନଙ୍କର ଅନୁଗତ ସାହିତ୍ୟିକଙ୍କ ବିରୁଦ୍ଧରେ ପ୍ରାଣ ଗୋଟିଏ ଶକ୍ତିଶାଳୀ ଦଳ ଛିଡ଼ା ହେଲେ ଓ ସାହିତ୍ୟର ନୂତନ ତାତ୍ପର୍ଯ୍ୟ ପଥ ଦେଖାଇଦେଲେ । ମଧ୍ୟବିତ୍ତଶ୍ରେଣୀର ବ୍ୟବସାୟୀ ବୁଦ୍ଧିଜୀବୀମାନେ ସମ୍ବାଦପତ୍ରର ପୃଷ୍ଠପୋଷକତାରେ ନୂତନ ସ୍ୱାଧୀନତା

ସେ ନୂତନ ରେନେସାଁର ଜୟ ଘୋଷଣା କଲେ । ଏହି ସମୟରେ ସାହିତ୍ୟର ମୂଳ ସମ୍ପର୍କ ବଦଳିଗଲା । ସ୍ୱଶାସନ ନୂତନ ସ୍ୱାଧୀନତାର ମୂଳ ଉତ୍ସ—ସବୁ କ୍ଷେତ୍ରରେ ସ୍ୱାଧୀନତା—ବ୍ୟବସାୟ ବାଣିଜ୍ୟ, ଜ୍ଞାନୋପାର୍ଜନ, ଧର୍ମଚର୍ଚ୍ଚା, ବୈଜ୍ଞାନିକ ଗବେଷଣା, ମାନୁଷ୍ୟର ଭାବ, ଭାଷା, ଛନ୍ଦ, ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ନୂତନ ଜାଗରଣ ଦେଖାଗଲା । ଏହା ଫଳରେ ଅନେକ ଦେଶରେ କୃଷିଶିଳ୍ପାଦି ଅର୍ଥନୈତିକ ବିପ୍ଳବ ଦେଖାଦେଲା । ପ୍ରକୃତ୍ୟ ଏଠାରେ ମନେ ରଖିବାକୁ ହେବ ଯେ ଅର୍ଥନୈତିକ ଅନୁବର୍ତ୍ତୀ ଅନ୍ୟାନ୍ୟ ଦେଶରେ ପରିବର୍ତ୍ତନର ହାତ ମିଳାଇ ଦେଲା ଏବଂ ଏପ୍ରକାର ବିପ୍ଳବ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା; କାରଣ ନୂତନ ଉତ୍ପାଦନ-ପ୍ରଣାଳୀ ସହିତ ସମାଜର ପୁରାତନ ଅନୁଷ୍ଠାନ ଖାପ ଖାଉନ ନାହିଁ । ଶକ୍ତିଶାଳୀ ବ୍ୟବସାୟୀ ସମ୍ପ୍ରଦାୟ ସହିତ ପୁରୁଣା ଭୂମ୍ୟଧିକାରୀ ସାମନ୍ତ ଶ୍ରେଣୀର ସଂଘର୍ଷ ହେଲା ।

ବିପ୍ଳବ ପରେ ସାହିତ୍ୟର ମୂଳ ଦୃଷ୍ଟି ବଦଳିଗଲା । ଇଚ୍ଛାର ଜୟ ହେଲା ସତ, କିନ୍ତୁ ଦେଶର ସମସ୍ତଙ୍କୁ ସ୍ୱାଧୀନତା ମିଳିଲା ନାହିଁ । ନୂଆ ଭିତ୍ତିରେ ସମାଜ ପୁନର୍ଗଠିତ ହେଲା ସତ, କିନ୍ତୁ ଜନସାଧାରଣଙ୍କର ଜୀବନରେ ତାହା ପ୍ରାଚୁର୍ଯ୍ୟ ଆଣିଲା ନାହିଁ । ମୁଷ୍ଟିମେୟ ନେତୃତ୍ୱରେ ବ୍ୟବସାୟୀ ଓ ବ୍ୟବସାୟ ଜଗତ୍ର ସମ୍ପଦ ସାହାଯ୍ୟରେ ଉତ୍ପାଦନ-ଆୟତ୍ତ ନେଇ ଯନ୍ତ୍ରପାତି ଅଧିକାର କରି ବସିଲେ । ଫଳାଫଳ ପ୍ରକାଣ୍ଡ କଳକାରଖାନା ସୃଷ୍ଟି ହୋଇ ବ୍ୟାପିଗଲା । ଗାଁ ଗଣ୍ଡାରୁ ଲୋକେ ଆସି କଳକାରଖାନାରେ କାମ କରିବା ଲାଗି ଜୁଟି ହେଲେ—ବହୁ ଜନବହୁଳ ବଡ଼ ବଡ଼ ସହର ସବୁ ଗଢ଼ି ଉଠିଲା । ସାଧାରଣ ଲୋକେ ଜମିଦାର କବଳରୁ ମୁକ୍ତି ଲଭି ସହରର

ପୁଞ୍ଜିପତିଙ୍କ ହାତରେ ପଡ଼ିଲା । ଯେଉଁ ଦାରିଦ୍ର୍ୟ ସେହି ଦାରିଦ୍ର୍ୟ ରହିଲା । ପୁଞ୍ଜିପତିର ସବୁ ଅନୁଷ୍ଠାନ ଶାସନ ଭାର ମଧ୍ୟ ଗ୍ରହଣ କଲା । ସାମନ୍ତ-ଯୁଗର ଆଭିଜାତ୍ୟ ଲୋପ ପାଇସାରିଛି, କିନ୍ତୁ ତା ପରିବର୍ତ୍ତେ ମୁଷ୍ଟିମେୟ ପୁଞ୍ଜିପତି ଖୁବ୍ ଶକ୍ତିଶାଳୀ ହୋଇଉଠିଲେ । ସବୁ କ୍ଷେତ୍ରରେ ସେମାନଙ୍କର ରାଜତ୍ୱ ଚାଲିଲା—କଳକାରଖାନା, ଖବରକାଗଜ, ଗଣପ୍ରଚାର ଅନୁଷ୍ଠାନ—ସବୁ ଏମାନଙ୍କ ହାତରେ ରହିଲା । ଯେଉଁ ଆଦର୍ଶବାଦୀ କବି ଓ ଯୁବକ ଦଳମାନଙ୍କର ଏକଚ୍ଛତ୍ର ଶାସନ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲେ, ପ୍ରତ୍ୟେକ କ୍ଷେତ୍ରରେ ସ୍ୱାଧୀନତା ପାଇଁ ସଂଗ୍ରାମ ଚଳାଇଥିଲେ—ସେମାନେ ନିସ୍ତବ୍ଧ ହେଲେ । ପୁଞ୍ଜିବାଦର ଉତ୍କଟ ରୂପ ଓ ତୀବ୍ର ଶ୍ରେଣୀବିଭାଗ ଯେତେବେଳେ ସାରା ସମାଜରେ ବ୍ୟାପିଗଲା, ପାଶ୍ଚାତ୍ୟ ଜଗତରେ ମଧ୍ୟ ସେ ପ୍ରକାର ବ୍ୟର୍ଥତା ଓ ଅବସାଦ ବହୁ ପରିମାଣରେ ଦେଖାଗଲା ।

ପାଶ୍ଚାତ୍ୟ ଅନ୍ୟାନ୍ୟ ଆଧୁନିକ କଳକାରଖାନା ଉତ୍ପାଦିତ ବସ୍ତୁ ପରି ବଜାରୋପଯୋଗୀ ବସ୍ତୁ ହିସାବରେ ପରିଗଣିତ ହେଲା । ନିଜ ଇଚ୍ଛାନୁସାରେ ଉଚ୍ଚ ଧରଣର ସାହିତ୍ୟ ସୃଷ୍ଟି କରିବାକୁ ହେଲେ ମୂଳଧନର ଦରକାର ହେଲା । ଯଦି କୌଣସି ପ୍ରକାଶକ ନିଜ ଖର୍ଚ୍ଚରେ ଛପାଇବାକୁ ରାଜିହେବ, ତାହାହେଲେ ସେ ବୁଝିବ ଯେ ଏହା କପରି ଅଗଣ୍ୟ ଅଶିକ୍ଷିତ ଓ ଅନଭିଜ୍ଞ ଖଟୁଥିବା କାରଖାନା ମଜୁରିଆଙ୍କ ମନଲାଖି ହେବ, ତା ହେଲେ ଯାଇ ତାର ଲାଭ ହେବ । ବ୍ୟବସାୟ ବୁଦ୍ଧି ହିଁ ସାହିତ୍ୟର ରୂପ ବଦଳାଇଲା । ତେଣୁ ଖୁବ୍ ଶସ୍ତାଧରଣର ଉପନ୍ୟାସ, ଉତ୍କଣ୍ଠିତ ଗଳ୍ପ, ରୋମାଞ୍ଚକର ଡକାୟତି, ଉଚ୍ଛୃଙ୍ଖଳ ଯୌନଚଞ୍ଚଳ ନାୟକ ନାୟିକାଙ୍କର ଅଶ୍ଳୀଳ ଜୀବନ ବୃତ୍ତାନ୍ତ ପ୍ରଭୃତି ଅଜସ୍ର ବହି ସବୁ ବହୁ

ସଂଖ୍ୟାରେ ପ୍ରକାଶିତ ହେବାକୁ ଲାଗିଲା । କେତେକ ବ୍ୟବସାୟୀଙ୍କର ଏହା ଗୋଟିଏ ପ୍ରଧାନ ବ୍ୟବସାୟରେ ପରିଣତ ହେଲା । ପୁଞ୍ଜିପତିଶ୍ରେଣୀ ଗଠିତ ସରକାର ସକାଶେ ମିଥ୍ୟା ପ୍ରଚାରରେ ସାହିତ୍ୟିକଙ୍କୁ ନିଯୁକ୍ତ କରୁଥିଲେ । ସାମ୍ରାଜ୍ୟବାଦୀ ପୁଞ୍ଜିପତିଙ୍କର ଅଗ୍ରଗାମୀ ଉଗ୍ରପନ୍ଥୀ ରାଜନୀତିଜ୍ଞମାନେ ନାଜି ଓ ଫାସିଷ୍ଟ ଦେଶରେ ସାହିତ୍ୟକୁ ଦୁଃସ୍ୱପ୍ନ ନିଜର ସ୍ୱାର୍ଥ ଲାଗି ବ୍ୟବହାର କଲେ । ସେହି ସ୍ୱାଧୀନ ଚିନ୍ତା ଅନ୍ୟ ଦେଶରେ ଆର୍ଥିକ କାରଣ ଯୋଗୁଁ ମିଥ୍ୟାପ୍ରମାଣ ହୋଇ ଆସୁଥିଲା. ଫାସିଷ୍ଟ ଦେଶରେ ତାହା ସମ୍ପୂର୍ଣ୍ଣ ଲୋପ ପାଇଗଲା । ମନୁଷ୍ୟର ନୀଚ ପ୍ରବୃତ୍ତି ସବୁକୁ ସାହିତ୍ୟିକ ଅତ୍ୟୁଜ୍ଜ୍ୱଳ ଓ ଗୌରବମୟ ଆସନରେ ନେଇ ବସାଇଲେ—'ରକ୍ତର ପବିତ୍ରତା' 'ଜାତିର ଦେବଦତ୍ତ ମହତ୍ତ୍ୱ' ପ୍ରଭୃତି ଭକ୍ତିମାନ ଓ ରହସ୍ୟାତ୍ମକ ସ୍ଲୋଗାନରେ ମଣିଷକୁ ଭୁଲାଇବାକୁ ଚେଷ୍ଟା ହେଲା । ଏପରିକି ଧର୍ମକୁ ମଧ୍ୟ ଏ ଢଙ୍ଗରେ ବ୍ୟବହାର କରିବାକୁ ଚେଷ୍ଟା ହେଲା ।

ଆଉ କେତେକ ଆର୍ଥିକ ସ୍ୱଚ୍ଛଳତା ଯୋଗୁଁ ବା ସାମାଜିକ ଜୀବନର ଜଟିଳତା ଯୋଗୁଁ ନିଜକୁ ସାମାଜିକ ଜୀବନଠାରୁ ଅଲଗା କରିବାକୁ ଚେଷ୍ଟା କଲେ— ସାହିତ୍ୟକୁ ପଣ୍ୟଦ୍ରବ୍ୟ ହିସାବରେ ନ ଦେଖି ପବିତ୍ର ସାହିତ୍ୟ ଦୃଷ୍ଟିରୁ (Art for art's sake) ଗ୍ରହଣ କଲେ । ଏହାଦ୍ୱାରା କାବ୍ୟ କବିତା, ଗଦ୍ୟ ଓ ସଙ୍ଗୀତର ରଚନାଭଙ୍ଗୀ, ପ୍ରକାଶ ଶୈଳୀ ଖୁବ୍ ଉନ୍ନତି ଲାଭ କଲା— ନୂତନ ଧରଣର ଶବ୍ଦବିନ୍ୟାସ ଦେଖାଗଲା । ବହୁ ଗଳ୍ପର ଭାବଧାରା ସୃଷ୍ଟିହେଲା ଏବଂ କ୍ରମେ ଏହା ବାସ୍ତବ ଜୀବନଠାରୁ ବହୁ ଦୂରକୁ ଚାଲିଗଲା । ସମାଜର ଜନସାଧାରଣଙ୍କଠାରୁ ଏହା ବିଚ୍ଛିନ୍ନ ହୋଇ ପଡ଼ିଲା — ସାହିତ୍ୟିକ କେବଳ କଳ୍ପନା-ବିଳାସୀ ଓ

ଶିଥିଳ ଓ ଅବଶ ହୋଇପଡ଼ନ୍ତି । ଦୁର୍ବଳମନା ମନୁଷ୍ୟ ଯେପରି ବାସ୍ତବ ଜୀବନରେ କୌଣସି ଆଘାତ ପାଇଲେ ବାଲ୍ୟାବସ୍ଥାର ସୁଖକର ଓ ଦ୍ୱନ୍ଦ୍ୱହୀନ ମାନସିକ ଅବସ୍ଥାକୁ ଫେରିଯାଏ—କ୍ଷୀଣସ୍ରୋତା ସ୍ରୋତସ୍ୱତୀ ସମ୍ମୁଖରେ କୌଣସି ପ୍ରତିବନ୍ଧକ ଉପୁଜିଲେ ନିଜ ପ୍ରବାହ ବଳରେ ତାକୁ ଅତିକ୍ରମ ନ କରିପାରି ସେପରି ଉତ୍କୃଷ୍ଟ ସ୍ଥାନ ପ୍ରତି ପଳାୟନ ଦିଏ—ସେହିପରି ଏମାନେ ଆଧୁନିକ ଯୁଗର ଉକ୍ତ ଶ୍ରେଣୀସଂଘର୍ଷ—ମୁଷ୍ଟିମେୟ ଲୋକଙ୍କର ଅବାଧ ସମ୍ପତ୍ତି ଓ ସ୍ୱାର୍ଥପରତା, ପାଖେ ପାଖେ ଅଗଣିତ ଜନସମାଜର ଦାରିଦ୍ର୍ୟ ଯନ୍ତ୍ରଣା ଦେଖି ପରସ୍ପରଘଟଣାବଳୀର ବଶବର୍ତ୍ତୀ ହୋଇ ପୌରାଣିକ ଯୁଗର କଳ୍ପନାପ୍ରଧାନ ମାନସିକ ଅବସ୍ଥାକୁ ଫେରିଗଲେ । ନିଜ ତଥା ସମଗ୍ର ମାନବଜାତି ପ୍ରତି ବିଶ୍ୱାସ ହରାଇ ଦୁଏତ ନିଷ୍କ୍ରିୟ ଆଦର୍ଶବାଦୀ ହୋଇପଡ଼ିଲେ କିମ୍ବା ହତୋଦ୍ୟମ ଷଣ୍ଟୁନଦୂଳ ବା ଜଗତ କେବଳ ଦୁଃଖମୟ ଏବଂ ଏହାର ଭବିଷ୍ୟତ ଅତି ଅନ୍ଧକାରମୟ ଏହି ଦର୍ଶନ ପ୍ରଚାର କଲେ । ଦରିଦ୍ର ଜନସାଧାରଣଙ୍କର ଏକମାତ୍ର ଭରସା ଆଧୁନିକ ବିଜ୍ଞାନରେ ଏମାନଙ୍କର ଅଟଳ ଆସ୍ଥା ନ ଥିବାରୁ ଓ ସମଗ୍ର ପୃଥ୍ୱୀର ପ୍ରତିଷ୍ଠିତ ଅଗଣିତ ଜନସମାଜର ପ୍ରବଳ ଜାଗରଣର ଧାବମାନ ପ୍ରଖର ସ୍ରୋତର ବାହାରେ ରହିଥିବାରୁ ଏମାନେ ଦୁର୍ବଳମନା, ପରାଜିତ ଓ ନିରାଶାବାଦୀ ହେବା ସ୍ୱାଭାବିକ ।

କିନ୍ତୁ, ଆଜି କେତେକ ପୁଞ୍ଜିପତି ବ୍ୟବସାୟୀର ବଜାର ସ୍ୱାର୍ଥରେ ଅଜ୍ଞ ଜନସାଧାରଣଙ୍କର ରୋମାଣ୍ଟିକ୍ ମନୋରଞ୍ଜନ ପାଇଁ ପୁଞ୍ଜିପତିର ଆଦେଶ ଅନୁସାରେ ନିଜର ସ୍ୱାଧୀନ ଚିନ୍ତାଧାରାକୁ ବିକ୍ରୀତ ଭାବରେ ବଜାରୋପଯୋଗୀ ପଣ୍ୟଦ୍ରବ୍ୟରେ ପରିଣତ କରିବାକୁ ବସିଲେ ନାହିଁ କି ଆଦର୍ଶବାଦ ଓ ନିରାଶାବାଦ

ପାଶ୍ଚାତ୍ୟଙ୍କର ସ୍ୱଚ୍ଛନ୍ଦଦୃଷ୍ଟିରୁ ଦେଖାଯାଉ ନିଜ ନିଜର ସ୍ୱାର୍ଥ ସାବଲ ଦୁର୍ଗ ଭିତରେ ବସି ଅବାଧ୍ୟ ଓ ନିସ୍ପୃହ ସାହିତ୍ୟ ସୃଷ୍ଟି କରିବାରେ ତୃପ୍ତି ଲାଭ କଲେ ନାହିଁ । ସେମାନେ ଶ୍ରେଣୀ-ସଂଘର୍ଷ ଘାତ ପ୍ରତିଘାତର କୁଟିଳ ଆବର୍ତ୍ତରେ ନିଜକୁ ପ୍ରତିମୁହୂର୍ତ୍ତରେ ଦେଖାଇଥିବାରୁ ସଂଘର୍ଷଶକ୍ତିର ପ୍ରକୃତ ମର୍ଯ୍ୟାଦା ନିଜ ଅନୁଭୂତି ଭିତର ଦେଇ ବୁଝିପାରନ୍ତି । ଉନ୍ନତିଶୀଳ ଆଧୁନିକ ସମାଜର ଅନ୍ତର୍ନିହିତ ଶକ୍ତି, ବିଜ୍ଞାନର ବିରାଟ ଆଶ୍ୱାସନା ଓ ପୃଥ୍ୱୀବ୍ୟାପୀ ପ୍ରପୀଡ଼ିତ ମାନବଶ୍ରେଣୀର ସମୁଜ୍ଜ୍ୱଳ ଭବିଷ୍ୟତ ସମ୍ଭାବନା ପ୍ରତି ସେମାନେ ସର୍ବଦା ସଜାଗ ଥିବାର ଜଣାଯାଏ । ଏମାନଙ୍କର ଦୃଢ଼ ବିଶ୍ୱାସ ଯେ ବର୍ତ୍ତମାନ ଯୁଗର ଶ୍ରେଣୀସଂଘର୍ଷ ଅଳ୍ପ ବେଶି ଦିନ ଟିକିପାରିବ ନାହିଁ—ଖୁବ୍ ନିକଟରେ ପୃଥ୍ୱୀବ୍ୟାପୀ ଗୋଟାଏ ବିରାଟ ବିପ୍ଳବ ଦାସତ୍ୱର ଶୃଙ୍ଖଳ ଛିଣ୍ଡାଇ ସାରା ମାନବଜାତିକୁ ମୁକ୍ତପଥରେ ଆଗେଇ ନେଇପାରିବ । ପ୍ରତ୍ୟେକ କ୍ଷେତ୍ରରେ ବର୍ତ୍ତମାନ ଯେପରି ଆଶଙ୍କା ସୃଷ୍ଟି ଚାଲୁଛି, ତାହା ବେଶିଦିନ ସ୍ଥାୟୀ ହେବା ସମ୍ଭବ ନୁହେଁ । ଯେଉଁଦିନ ସମଗ୍ର ମାନବସମାଜର ସମଷ୍ଟିଗତ ପ୍ରାଣ ଓ ଚିନ୍ତାଧାରା ଅର୍ଥନୈତିକ ଓ ମାନସିକ ଜଗତରେ ଆତ୍ମଘାତୀ ଶ୍ରେଣୀସଂଘର୍ଷର ସଙ୍କଟମୟ ଆବର୍ତ୍ତରୁ ନିସ୍ତାର ଲଭି ପୂର୍ଣ୍ଣ ସତେଜ ଅବସ୍ଥାକୁ ଫେରି ଆସିବ, ସେତିକିବେଳେ ସାହିତ୍ୟର ପୂର୍ଣ୍ଣ ବିକାଶ ସମ୍ଭବ ହେବ । ବର୍ତ୍ତମାନ ଉନ୍ନତ ପ୍ରଗତିଶୀଳ ଦେଶମାନଙ୍କରେ ଏହାର ଲକ୍ଷଣ ପରିଷ୍କାର ଦେଖାଦେଲାଣି । ପ୍ରତ୍ୟେକ ବ୍ୟକ୍ତିର ଶ୍ରମ ଓ ଶ୍ରମଫଳ ସମଷ୍ଟିଗତ ହୋଇଥିଲେ ବୃଥା ଶ୍ରମର ଲବ୍ଧାଂଶ ଓ ଉତ୍ପାଦନ କରୁଥିବା ଯନ୍ତ୍ରପାତି ମୁଷ୍ଟିମେୟ ଲୋକଙ୍କର ବ୍ୟକ୍ତିଗତସମ୍ପତ୍ତି ହୋଇ ରହିଛି । ତେଣୁ ପ୍ରତ୍ୟେକ ଦିଗରେ ଉପଯୁକ୍ତ ବିକାଶ ହୋଇ-

ଚାଟୁକାରୀ; ସାହିତ୍ୟ କେବଳ ଓ ଏକାଧିକାରୀ ହୋଇ ପଡ଼ୁଛି, ଦର୍ଶନ ଉଦ୍ଦେଶ୍ୟହୀନ ହୋଇପାରୁଛି । ବର୍ତ୍ତମାନ ସମାଜର ଅନ୍ତର୍ନିହିତ ଶକ୍ତି ଓ ଉପାଦାନ ବିକୃତରୂପ ଧାରଣ କରିଥିବେ ହେତୁ ସାମାଜିକ ଦେହ ଓ ଆକାର ତାର ଅନୁପ୍ରକାଶରେ ପ୍ରତି-ଫଳିତ ହୋଇ ରହିଛି, ତେଣୁ ଏଥିରେ ଗୁଣାତ୍ମକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ।

ପର ସମସ୍ତ ମୁକ୍ତପ୍ରାଣରେ ସମାନ ଅଧିକାର ସହିତ ସାହିତ୍ୟ, କଳା, ସଙ୍ଗୀତ-ବିଜ୍ଞାନ ପ୍ରଭୃତିରେ ସହଯୋଗ କରି-ପାରିବେ, ତା ହେଲେ ଏହା ନୂଆ ରୂପ ଧାରଣ କରିବ । ଦୂଷିତ ରକ୍ତ ପରିବର୍ତ୍ତେ ନୂତନ ଯୁଗର ସତେଜ ରକ୍ତ ସାହିତ୍ୟକୁ ନବଜୀବନ ଦାନ କରିବ । ଶ୍ରେଣୀସଂଘର୍ଷ ବ୍ୟକ୍ତିର ମନକୁ ଯେତେ ଭାବରେ ପ୍ରକାର କ୍ଷତବିକ୍ଷତ କରି ଶକ୍ତିହୀନ କରି-ପକାଇଛି, ତାର ଉପଶମ ଘଟିବ, ସମନ୍ୱିତ ଚେତନା ଭିତର ଦେଇ ବ୍ୟକ୍ତିର ପୂର୍ଣ୍ଣ ବିକାଶ ହେବ ଓ ପୂର୍ବକାଳର କଳ୍ପନା-ବିଳାସୀ ଆଦର୍ଶବାଦୀ ଦାର୍ଶନିକଙ୍କର 'ଏକରେ ବହୁ ଓ ବହୁରେ ଏକ ସାହିତ୍ୟ'ଙ୍କ ବ୍ୟାଖ୍ୟା ଏ ପ୍ରକାର ସାମାଜିକ ପରିସ୍ଥିତିରେହିଁ କେବଳ ସମ୍ଭବ ହୋଇପାରିବ । କେବଳ ମାନବଜାତିର ପୂର୍ଣ୍ଣ ସ୍ୱାଧୀନତାର ପାଇଁ ଲକ୍ଷ୍ୟ କେତେକ ନବୋନ୍ମେଷ ଦୃଢ଼ପ୍ରତିଜ୍ଞ କରି ସାହିତ୍ୟ ଓ ବିଜ୍ଞାନର ନୂତନ ଆନ୍ଦୋଳନ ଜାତି-ଧର୍ମ ଓ ଦେଶ

କଣ୍ଟିନେଣ୍ଟରେ ପୂର୍ବପାର ସମସ୍ତ ନାଟ୍ୟ ଓ ପ୍ରତୀଚ୍ୟ ସଙ୍ଗୀତକୁ ସାଂପ୍ରତରେ ଅନୁପ୍ରାଣିତ ଓ ଜାଗ୍ରତ କରୁଛି । ତେଣୁ ଋଷ୍ ସାହିତ୍ୟର ଉନ୍ନତି ଯେ ଖୁବ୍ ଉଲ୍ଲେଖନୀୟ ଏଥିରେ ସନ୍ଦେହ ନାହିଁ ।



ଲ: ଦ୍ର:—ଏହି କ୍ଷୁଦ୍ର ପ୍ରବନ୍ଧ ଭିତରେ ଇଂଲଣ୍ଡ ଫ୍ରାନ୍ସ ଜର୍ମାନୀ ଓ ଋଷିଆ ଦେଶର ପ୍ରଗତିଧର୍ମୀ ମୂଳକ ଶ୍ରେଷ୍ଠ ସାହିତ୍ୟିକଙ୍କର ଲେଖାରୁ ଦୃଷ୍ଟାନ୍ତ ଦେବା ସମ୍ଭବ ନୁହେଁ; ତେଣୁ ସାହିତ୍ୟର କ୍ରମବିକାଶ ବିଷୟରେ କୋଟିଏ ମୋଟାମୋଟି ଆଲୋଚନା ମାତ୍ର କରାଗଲା । ସାହିତ୍ୟର ଏ ପ୍ରକାର କ୍ରମବିକାଶରେ ଯେ ବ୍ୟତିକ୍ରମ ନାହିଁ ତାହା ଭାବିବା ଭୁଲ । କିନ୍ତୁ ସାହିତ୍ୟ କେତେକ ଖାମଖିଆଲି ଲୋକଙ୍କର ଚେଷ୍ଟାପ୍ରସୂତ ଅନାଧାର ବୋଲି ଭାବିବା ମଧ୍ୟ ଭୁଲ । ସାହିତ୍ୟର କ୍ରମବିକାଶରେ ଯେ କୋଟିଏ ନିର୍ଦ୍ଦିଷ୍ଟ ପ୍ରଣାଳୀ ରହିଛି ତାର ସୂଚନା ଦେବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ଏହି ବୈଜ୍ଞାନିକ ପ୍ରଣାଳୀରେ ସାହିତ୍ୟକୁ ବିଶ୍ଳେଷଣ କଲେ ଅନେକ ନୂତନ ତଥ୍ୟ ମିଳିପାରିବ ବୋଲି ଲେଖକର ବିଶ୍ୱାସ ।

# ସାମାଜିକ ଶ୍ରେଣୀ ବିଭାଗ

ସମାଜର ବିଭିନ୍ନ ଅବସ୍ଥାରେ ଶ୍ରେଣୀ ବିଭାଗର ତାତ୍ପର୍ଯ୍ୟ ଭିନ୍ନ ଭିନ୍ନ ଭାବରେ ଦେଖାଦେଇଥାଏ । କେତେକ ପରିସ୍ଥିତିରେ ଗୋଟିଏ ପ୍ରକାର ଶ୍ରେଣୀ ବିଭାଗ ସମାଜର ପ୍ରଭୂତ କଲ୍ୟାଣ ସାଧନ କରେ ତ ଆଉ କେତେକ ପରିସ୍ଥିତିରେ ଏହା ବଡ଼ ବିଷମୟ ହୋଇପଡ଼େ ଏବଂ ଅନେକ ସମୟରେ ତତାମାଳନ ସମାଜକୁ ମଧ୍ୟ ଧ୍ୱଂସ କରିଦିଏ । ମନୁଷ୍ୟ ସମାଜରେ କୌଣସି ନିୟମ କାନୁନ ଶାଶ୍ୱତ ଓ ଚିରନ୍ତନ ନଥିବାରୁ ଏବଂ ଏହା ସମୟ ସ୍ଥାନ ଓ ପରିସ୍ଥିତି ଅନୁସାରେ ବରାବର ପରିବର୍ତ୍ତିତ ହେଉଥିବାରୁ ଏ ପ୍ରକାର ପରସ୍ପର ବିରୋଧୀ ଫଳାଫଳ ଦେଖାଦେବା ସ୍ୱାଭାବିକ । ଅତି ପ୍ରାଚୀନ ଯୁଗରେ ଆର୍ଯ୍ୟମାନେ ଯେତେବେଳେ ଛେଳି, ମେଣ୍ଢା, ଗାଈ, ଘୋଡ଼ାଙ୍କ ସଙ୍ଗରେ ବୋଝା ପିଠିରେ ଯାଯାବର ଅବସ୍ଥାରେ ବୁଲୁଥିଲେ ସେତେବେଳେ କୌଣସି ଶ୍ରେଣୀବିଭାଗର ଆଦୌ ଦରକାର ନଥିଲା କିମ୍ବା ଆଦ୍ୟ ଆଦିମ ଯୁଗରେ ଯେତେବେଳେ ଜଙ୍ଗଲ ମଣିଷମାନେ ଖାଦ୍ୟ ଶିକାର କରି ବଞ୍ଚୁଥିଲେ ସେତେବେଳେ ମଧ୍ୟ ଶ୍ରେଣୀବିଭାଗର ଆବଶ୍ୟକତା କେହି ଅନୁଭବ କରୁନଥିଲେ । କ୍ରମେ କ୍ରମେ ଆର୍ଯ୍ୟମାନେ ସ୍ଥାୟୀଭାବରେ ବସତି ଆରମ୍ଭ କଲେ—ଜମିବାଡ଼ି ଚାଷ କଲେ—ଘରଦ୍ୱାର ଗାଁ-ଗଣ୍ଡା ସହର ସ୍ଥାପନ କଲେ—ଅନେକେ ବ୍ୟକ୍ତିଗତ ସମ୍ପତ୍ତି ସଞ୍ଚୟ କରିବାରେ ଲାଗିପଡ଼ିଲେ ଏବଂ ସେହି ସାଙ୍ଗେ ସାଙ୍ଗେ ଭିନ୍ନ ଭିନ୍ନ ବୃତ୍ତି ଓ ସ୍ୱାର୍ଥଦୃଷ୍ଟିରୁ ବିଭିନ୍ନ ଶ୍ରେଣୀ ବିଭାଗ ଗଢ଼ିଉଠିଲା । ସେତେବେଳେ ଯୁଦ୍ଧ ପାଇଁ ଶାସକ ଓ ସୈନ୍ୟ ଶ୍ରେଣୀ ଦରକାର ହେଉଥିଲା । ଦେଶ ଶାନ୍ତିରକ୍ଷା ପାଇଁ

ହେଉ ବା ନିଜର ଲୁଣ୍ଠିତ ସମ୍ପତ୍ତି ରକ୍ଷାପାଇଁ ହେଉ ବା ଅନ୍ୟର ରାଜ୍ୟ ଓ ଧନ ଲୁଣ୍ଠନ ଲାଗି ହେଉ ସେମାନଙ୍କୁ ଅନ୍ୟମାନଙ୍କ ସାଙ୍ଗରେ ଲଢ଼ାଇ କରିବାକୁ ଦରକାର ପଡ଼ୁଥିଲା ସେମାନେ ପିଲାଦିନରୁ ନିଜକୁ କସରତ କରି ଧନୁଶର କୃପାଣରେ ଧୁରନ୍ଧର ହେବାପାଇଁ ଚେଷ୍ଟା କରୁଥିଲେ । ଆଉ କେତେକ ମନ୍ତ୍ରତନ୍ତ୍ର, ଜ୍ୟୋତିଷ ଓ ଅନ୍ୟାନ୍ୟ କଳ୍ପନାତ୍ମକ ବିଦ୍ୟାର୍ଜନଲାଗି ମସ୍ତିଷ୍କ ଚାଳନାରେ ବ୍ୟସ୍ତ ରହୁଥିଲେ । ଆଉ ଦଳେ ଗୋଟିଏ ସ୍ଥାନରୁ ଜିନିଷ ଅନ୍ୟ ସ୍ଥାନରେ ନେଇ ବିକି ଜୀବିକା ଉପାର୍ଜନ କରିବାକୁ ଲାଗିଲେ ଏବଂ ଅବଶିଷ୍ଟାଂଶ କଠିନ ଶାରୀରିକ ପରିଶ୍ରମ କରି ଉତ୍ପାଦନ ବଢ଼ାଇବାରେ ଲାଗିଲେ ଓ ଉପରୋକ୍ତ ଶ୍ରେଣୀର ଲୋକମାନଙ୍କର ସମସ୍ତ ପ୍ରକାର ସେବା କଲେ । ଜୀବିକା ଉପାର୍ଜନ ଲାଗି ନିଜନିଜ ବୃତ୍ତି ଓ କାର୍ଯ୍ୟ ଅନୁସାରେ କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ, ଶୂଦ୍ର—ଏହିପରି ଚାରୋଟି ପ୍ରଧାନ ଶ୍ରେଣୀବିଭାଗ ପ୍ରଥମେ ହୋଇଥିଲା । କିନ୍ତୁ ପ୍ରଥମେ ଏ ପ୍ରକାର ବିଭାଗ ଜନ୍ମଗତ ନ ଥିଲା କି ପରସ୍ପର ମଧ୍ୟରେ ଏତେ ବେଶି ଦୃଢ଼ ସାମାଜିକ ପ୍ରତିବନ୍ଧକ ନ ଥିଲା । କ୍ରମ ବିକାଶ ଯୋଗୁଁ ଜନ୍ମଗତ ଭେଦରେ ଦୃଢ଼ତା ଦେଖାଦେଲା ଏବଂ ସମାଜ ପ୍ରଗତି ପଥରେ ଅନେକ ଅଟକିଗଲା । କିନ୍ତୁ କ୍ରମେ କ୍ରମେ କ୍ଷତ୍ରିୟ ଓ ବ୍ରାହ୍ମଣମାନଙ୍କ ହାତରେ ନାନା କାରଣରୁ ଦେଶର ଅଧିକାଂଶ ସମ୍ପତ୍ତି ଓ ଶିକ୍ଷା ଦେବା ଦାୟିତ୍ୱ ରହିଯିବାରୁ ସେମାନଙ୍କ ହାତରେ ଶାସନ ପରିଚାଳନାର ଭାର ମଧ୍ୟ ସ୍ଥାୟୀ ଭାବରେ ରହିଗଲା ଏବଂ ସେମାନେ ପୈତୃକ ସମ୍ପତ୍ତି ଉତ୍ତରାଧିକାର ସୂତ୍ରେ ଭୋଗ କଲେ । ସେହିମାନେ ବଂଶଗତ ବୃତ୍ତି ମଧ୍ୟ ଗ୍ରହଣ କଲେ । ଫଳରେ ସମ୍ପତ୍ତି, ଶାସନପରିଚାଳନାର ସମସ୍ତ କଳକୌଶଳ ତଥା ସେ ଯୁଗର ଶାସ୍ତ୍ର ଓ ବିଦ୍ୟାର୍ଜନର ସବୁ

ପ୍ରକାର ସୁବିଧା ଓ ସୁଯୋଗ ସେମାନଙ୍କ ହାତରେ ରହିବାକୁ ଏ ପ୍ରକାର ସୁଯୋଗର ଓ ସମ୍ମାନଜନକ ବୃତ୍ତି ନିଜ ନିଜ ହାତରେ ଆବଦ୍ଧ କରି ରଖିବାର ଚେଷ୍ଟା ହେଲା । ବଂଶ ପରମ୍ପରାରେ ଏହା ଗଢ଼ି ଉଠିଲା ଏବଂ ମୌଳିକ ଶ୍ରେଣୀ ବିଭାଗ କ୍ରମେ ଜନ୍ମଗତ ହୋଇପଡ଼ିଲା । ବ୍ରାହ୍ମଣ ଚଣ୍ଡାଳଠାରୁ ଜ୍ଞାନ ଲାଭ କଲେ ସୁଦ୍ଧା ଦେବତାର ପୂଜକ ହୋଇରହିଲା —'ଯେତେହେଲେ ବ୍ରାହ୍ମଣ ପିଲା' ବୋଲି ସମ୍ମାନ ପାଇଲା—ସମାଜର ଶ୍ରେଷ୍ଠ ଶ୍ରେଣୀ ହିସାବରେ ଗଣ୍ୟ ହେଲା — ଆଉ ଚଣ୍ଡାଳ ଯେତେ ଜ୍ଞାନ ଅର୍ଜନ କଲେ ସୁଦ୍ଧା ମନ୍ଦିର ଭିତରେ ପଶିବାର ଅଧିକାର ପାଇଲା ନାହିଁ—ଅନ୍ୟାନ୍ୟ ଜାତି ତାକୁ ଅସ୍ପୃଶ୍ୟ କରି ରଖିଲେ । ଏହି ଶକ୍ତିଶାଳୀ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ଏ ପ୍ରକାର ସାମାଜିକ ସ୍ୱତ୍ୱ ପାଇଁ ଅନ୍ୟମାନଙ୍କ ଉପରେ ଜବରଦସ୍ତ ଲଦିଦେଲେ ।

ପ୍ରଥମେ ପ୍ରଥମେ ଏ ପ୍ରକାର ଶ୍ରେଣୀ ବିଭାଗର ସାମାଜିକ ଉପକାରିତା ବହୁତ ଥିଲା; ଏହା ଫଳରେ ଦର୍ଶନ, ସାହିତ୍ୟ ଗଣିତ, ବିଜ୍ଞାନ, ରାଜନୀତି ଓ ଶାସନ ସମ୍ପର୍କୀୟ ବହୁ ପ୍ରକାର ବିଦ୍ୟାର ବିକାଶ ହୋଇଥିଲା । କିନ୍ତୁ ସମାଜର ଅନ୍ୟାନ୍ୟ ସମ୍ପର୍କ ବଦଳି ଯିବା ସାଙ୍ଗେ ସାଙ୍ଗେ ଉପରୋକ୍ତ ଶ୍ରେଣୀ ବିଭାଗ ମଧ୍ୟ ବଦଳିଯିବା ଉଚିତ । ତା ନହେଲେ ଏଥି ଯୋଗୁଁ ଯେଉଁ ସାମାଜିକ ବାଧା ଦେଖାଦିବ ତଦ୍ଦ୍ୱାରା ସମାଜ ଧ୍ୱଂସ ପାଇଯିବ । ଉଦାହରଣ ସ୍ୱରୂପ— ବର୍ତ୍ତମାନ ଯୁଗରେ ଉପରୋକ୍ତ ଶ୍ରେଣୀ ବିଭାଗର କୌଣସି ମୂଲ୍ୟ ନାହିଁ । ଆଧୁନିକ ଗଣତାନ୍ତ୍ରିକ ଯୁଗରେ ସମସ୍ତ ଜନ ନିଜର ଶକ୍ତି ତଥା ସମୃଦ୍ଧ ସାମାଜିକ କାର୍ଯ୍ୟକଳାପ ପ୍ରତି ବହୁତ ସଚେତନ ହୋଇ ଉଠିଲେଣି—ଆଜି ଆଉ ବୃଥା ପାଇପାରିବ ନା ସେ ଦଳେ

ଖାଲି ଅର୍ଥୋପାର୍ଜନ କରିବେ—ଆଜି ଦଳେ ପୁଣି ଆଉ ଦଳେ ଖାଲି ସେବା ବା ବ୍ୟବସାୟ କରିବେ । ଏହା କେହି ମାନିବାକୁ ରାଜି ନୁହନ୍ତି । ଆଜି ଜଣେ ତନ୍ତି, ବ୍ରାହ୍ମଣ ବା ହରିଜନ ଶିକ୍ଷକ ହୋଇପାରେ ଏବଂ ଶିକ୍ଷକ ହୋଇ ପାରିଲେ ପରେ ତାଙ୍କୁ ଶିକ୍ଷକଙ୍କର ଗୋଟିଏ ପ୍ରକାର ଦୃଷ୍ଟିକୋଣ, ବୃତ୍ତିଗତ ଭାବମନ, ଉଦ୍ଦେଶ୍ୟର ସ୍ୱାର୍ଥ ସମ୍ବନ୍ଧୀୟ ଏକତା ହେତୁ ସେମାନଙ୍କୁ ଗୋଟିଏ ପୃଥକ୍ ଶ୍ରେଣୀ-ଭୁକ୍ତ କରେ । ଏଥିରେ ପୁରୁଣା ଜାତି ଭେଦର କୌଣସି ସମ୍ପର୍କ ରହେନା—ଏବେ ତଥାପି ଯଦି ପୁରାତନ ଜାତିଗତ ବିଦ୍ୱେଷ ଭାବ-ନରେ ରହିଲେ ସମାଜରେ ନାନା ପ୍ରକାର ଜଟିଳତା ଏବଂ ଉତ୍ତେଜନା ସୃଷ୍ଟି ହୁଏ ଏବଂ ଜାତୀୟ ଏକତା ନଷ୍ଟ ହେବାଦ୍ୱାରା ଗଣତାନ୍ତ୍ରିକ ଢାଞ୍ଚାର ମଧ୍ୟ ବିଲୟ ଘଟେ ।

ଆମ ଦେଶର ହିନ୍ଦୁ ମୁସଲମାନ ବିଦ୍ୱେଷ ମୂଳରେ ହିନ୍ଦୁମାନଙ୍କର ଏହି ଶ୍ରେଣୀ ବିଭାଗ ଯେ ବହୁ ପରିମାଣରେ ଦାୟୀ, ଏଥିରେ ସନ୍ଦେହ ନାହିଁ । ବଙ୍ଗଳା ପ୍ରଭୃତି ସ୍ଥାନରେ ନିମ୍ନଶ୍ରେଣୀର ବହୁ ତଥା-କଥିତ ଅଛୁଆଁ ଓ ପତିତଙ୍କର ଗୌରବ ବା ସମାଜରୁ ବହିଷ୍କୃତ ହିନ୍ଦୁମାନେ ମୁସଲମାନ ବା ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିଥିବାର ଦେଖାଯାଏ । ଅନ୍ୟ ଧର୍ମ ଗ୍ରହଣ କଲାପରେ ସେମାନଙ୍କର ସାମାଜିକ ପଦୋନ୍ନତି ହୋଇଥାଏ—ତା ପରେ ସେମାନେ ପୂର୍ବତନ ଧର୍ମର ପ୍ରତି ଘୋର ଶତ୍ରୁ ହୋଇପଡ଼ନ୍ତି । ପୂର୍ବରୁ ଘୃଣିତ ହୋଇ ରହିଥିବା ଅସନ୍ତୋଷ ବିଦ୍ୱେଷ ଓ ଶତ୍ରୁତା ଶତ ଗୁଣରେ ବଢ଼ି ତଥାକଥିତ ଭାଇମାନଙ୍କ ଉପରେ ଯେପରି ଅନାସ୍ଥା ହୋଇପଡ଼େ । ବଙ୍ଗଳାର ଭୟାବହ ସାମ୍ପ୍ରଦାୟିକ ଗଣ୍ଡଗୋଳ ପଛରେ ଏ ପ୍ରକାର କ୍ରିୟା କାମ କରିଥିବାର ଜଣାଯାଏ ।

ଏ ପ୍ରକାର ଶ୍ରେଣୀ ବିଭାଗ ଦେଶର ସମସ୍ତ ଉତ୍ପାଦନ ବୃତ୍ତିରେ ଏବଂ ଯୁଦ୍ଧ ବିଗ୍ରହ ସମୟରେ ଦେଶରକ୍ଷା କାମରେ ମଧ୍ୟ ବିଶେଷ ବାଧା ସୃଷ୍ଟି କରେ । ବର୍ତ୍ତମାନ ଯୁଦ୍ଧ ଲକ୍ଷ ଲକ୍ଷ ବ୍ରାହ୍ମଣ ଜାତିର ପରିଶ୍ରମ କରିବାକୁ ନାରାଜ— ଯଜ୍ଞ ଯାଗିବେ ଚଟକେ, ହଳ ଧରି ଚାଷ କରିବେ ନାହିଁ—ଫଳରେ ଦେଶର ଉତ୍ପାଦନ କମିବାକୁ ବାଧ୍ୟ । ଯୁଦ୍ଧ ସମୟରେ ବହୁ ସଂଖ୍ୟାରେ ଦେଶର ଯୁବଶକ୍ତି ନିଯୁକ୍ତ କରିବାକୁ ବାହାରିଲେ ତେବେ ଅନ୍ୟ ସମସ୍ତ ଜାତି ମିଳି ମିଶି ସବୁ ପ୍ରକାର କାମ ନ କରନ୍ତି ତାହେଲେ ଦେଶ ଯେ ନିଶ୍ଚୟ ପରାସ୍ତ ହୋଇଯିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ତା ଛଡ଼ା ବର୍ତ୍ତମାନ ହରିଜନମାନଙ୍କର ଯାହା ଅବସ୍ଥା, ସେଥିରେ ସେମାନଙ୍କର ଅନ୍ୟମାନଙ୍କ ସହିତ ମିଳିମିଶି କାମ କରିବାକୁ କାହିଁକି ବା ଇଚ୍ଛା ହେବ; ସେମାନଙ୍କର ଅବସ୍ଥା ଅତି ଶୋଚନୀୟ; ବର୍ତ୍ତମାନର ଅବସ୍ଥାଠାରୁ ତ ଏହା ଆଉ ଖରାପ ହୋଇପାରେ ନା; ତେଣୁ ଅତ୍ୟନ୍ତ ଉଦାସୀନଭାବରେ ସେମାନେ କାମ କରିବେ କିମ୍ବା ସାମାନ୍ୟ ଟିକିଏ ପ୍ରଲୋଭନରେ ବାହ୍ୟ ଶତ୍ରୁକୁ ସାହାଯ୍ୟ କରିବାକୁ ଚେଷ୍ଟା ମଧ୍ୟ କରିପାରନ୍ତି । ବାହାର ଶତ୍ରୁ ଏ ପ୍ରକାର ପରିସ୍ଥିତିର ଉପଯୁକ୍ତ ସଦ୍ବ୍ୟବହାର କରିବାକୁ ବା କାହିଁକି ଛାଡ଼ିବ ? ଏତଦ୍ଭିନ୍ନ ଉଚ୍ଚ ବର୍ଣ୍ଣର ହିନ୍ଦୁ ମୁସଲମାନଙ୍କ ଭିତରେ ଯାହାକି ହେଉଥିଲା ଉପର ଶ୍ରେଣୀ ହିନ୍ଦୁ ଓ ଅବହେଳିତ ହରିଜନ ମାନଙ୍କ ଭିତରେ ଯେ କୌଣସି ମୁହୂର୍ତ୍ତରେ ଧ୍ୱଂସାତ୍ମକ ସଂଘର୍ଷ ଲାଗିଯିବାର ସମ୍ଭାବନା ମଧ୍ୟ ରହିଛି । ସେମାନେ ସେମାନଙ୍କର ନ୍ୟାଯ୍ୟ ଦାବୀ ଓ ମାନବୋଚିତ ଅଧିକାର ସମ୍ବନ୍ଧରେ ଜାଗ୍ରତ ହେଉଥିବା ବେଳେ ଅନ୍ୟମାନଙ୍କର ସେହି ପୁରୁଣା ମନୋବୃତ୍ତିରେ କୌଣସି ପରିବର୍ତ୍ତନ ନ ହେଲେ ବିଦ୍ରୋହ ଅବଶ୍ୟମ୍ଭାବୀ ।

ମଧ୍ୟବିତ୍ତ ଶ୍ରେଣୀ ଶକ୍ତିଗୁଡ଼ିକୁ ଭିତ୍ତି କରି ପୁରାତନ ସ୍ଥିତ ସମାଜର ଅନ୍ତର୍ନିହିତ ସାମାଜିକ ସଂଘର୍ଷ ପ୍ରତିଷ୍ଠିତ ଏବଂ ଆମ୍ଭେମାନେ ଏହାକୁ ଉତ୍ତରାଧିକାର ସୂତ୍ରେ ପାଇଛୁ । ତା ଛଡ଼ା ଆଧୁନିକ ଯୁଗର ଅନେକ ପ୍ରକାର ନୂତନ ଶ୍ରେଣୀ ଶକ୍ତି ଆମ ସମାଜ ଭିତରେ ଆହୁରି ଜଟିଳତା ସୃଷ୍ଟି କରୁଛି । ଆମ ଦେଶର ବର୍ତ୍ତମାନ ଶିକ୍ଷା ଯେପରି ପୁରାତନ ସାମାଜିକ ଶ୍ରେଣୀ ଶକ୍ତିଗୁଡ଼ିକୁ ଗୋଟିଏ ସ୍ତରରେ ଭେଦ କରୁଥିବାବେଳେ ଶିକ୍ଷିତ ଓ ଅଶିକ୍ଷିତ ସ୍ତରରେ ଆଉ ଗୋଟିଏ ପ୍ରକାରର ଶ୍ରେଣୀ ଶକ୍ତି ସୃଷ୍ଟି କରିବାରେ ଲାଗିଛି । ଡେପୁଟିର ପୁଅ ପ୍ରଫେସର, କିମ୍ବା ଡେପୁଟି କିମ୍ବା ଡାକ୍ତର ହେଉଛି—ଡାକ୍ତରର ପୁଅ ଡେପୁଟି ବା ଇଞ୍ଜିନିୟର ହେଉଛି । ଏକ ସ୍ୱାର୍ଥ ଏମାନଙ୍କ ଭିତରେ ଗୋଟାଏ ପ୍ରକାର ଏକତା ମଧ୍ୟ ଆଣିପାରୁଛି ଏବଂ ନିଜ ନିଜର ସୁବିଧା ବଜାୟ ରଖିବା ଲାଗି ସରକାର ଭିତରେ ନାନା ପ୍ରକାର ଚେଷ୍ଟା ଓ କୌଶଳ ଲାଗିରହିଛି । ମେହେନ୍ତରର ପୁଅ ମେହେନ୍ତର ରହୁଛି—ମଜଦୁରଟିର ମଜୁରି ଖଟିକରି ଜୀବିକା ଉପାର୍ଜନ କରୁଛି । ଉପର ଜାତିର ଶିକ୍ଷିତ ଲୋକଙ୍କ ହାତରେ ସମସ୍ତ ଶିକ୍ଷା ଓ ଶାସନ କେନ୍ଦ୍ରୀଭୂତ ହେଉଥିବାରୁ ଶିକ୍ଷିତ ଓ ଅଶିକ୍ଷିତ ମଧ୍ୟରେ ସାମାଜିକ ବନ୍ଧନ ଦୃଢ଼ ଓ ସ୍ଥାୟୀ ହୋଇ ଉଠିଛି—ତା ସାଙ୍ଗକୁ ଉପରେ ଅନେକ ଜାତି ଭେଦ ମଧ୍ୟ ଏ ଦୁଇ ଶ୍ରେଣୀ ମଧ୍ୟରେ ଭିନ୍ନ ଜଟିଳତା ଆହୁରି ବଢ଼ାଉଛି ।

ରାଜାମହାରାଜା, ଜମିଦାର ବ୍ୟବସାୟୀ, ପୁଞ୍ଜିପତି ପ୍ରଭୃତି ଧନୀକ ଶ୍ରେଣୀ ମଧ୍ୟ ସମାଜ ଭିତରେ ଅଲଗା ଗୋଟିଏ ସ୍ୱତନ୍ତ୍ର ପ୍ରାଚୀର ବାନ୍ଧି ରଖିଛନ୍ତି—ଦରିଦ୍ର ଭୂଇଁ ମୂଲିଆ, ସର୍ବହରା ମଜଦୁର ଓ

୧- ଅଦିମ ଶ୍ରେଣୀହୀନ ସମାଜ ।



ଅନ୍ୱେଷଣକର ବୈଜ୍ଞାନିକ ପ୍ରଣାଳୀରେ ତାର ଫଳାଫଳ ଓ ତତ୍ତ୍ୱ ନିର୍ଣ୍ଣୟ କରିବାରେ ଚେଷ୍ଟା କରୁଛୁ । ତା ପରେ ନୈତିକ ଉନ୍ନତିକୁ କେତେକ ସାଙ୍କେତିକ ନକ୍ସା ଓ ଗଣିତସମସ୍ୟାର ବ୍ୟବହାର ଲେଖିବା ଦ୍ୱାରା ଅନେକ କଥା ସହଜରେ ହୃଦୟଙ୍ଗମ କରିହୁଏ ।

ପଦାର୍ଥ ବିଜ୍ଞାନର ଚୁମ୍ବକ, ବିଦ୍ୟୁତ୍ ବା ମାଧ୍ୟାକର୍ଷଣ କ୍ଷେତ୍ର ( field ) ପରି ଅନେକ ସମ୍ପ୍ରଦାୟ ବା ଗୋଷ୍ଠୀର ବନ୍ଧନ ଶକ୍ତିକୁ ସାମାଜିକ କ୍ଷେତ୍ର ଆକାରରେ ଦେଖି ଦେଖାଯାଇପାରେ ଏବଂ ପ୍ରତ୍ୟେକ ଶକ୍ତିର ହାର ଓ ଗତି ଏବଂ ଅନ୍ୟାନ୍ୟ କ୍ଷେତ୍ରର ସମନ୍ୱିତ ଫଳାଫଳ ମଧ୍ୟ ନିରୂପଣ କରାଯାଇପାରେ । ଏ ପ୍ରକାର 'ବ୍ୟବହାର ସାମାନ୍ୟ ଆଭାସ ମାତ୍ର ଏଠାରେ ଦିଆଗଲା ।

ଆଦିମ ଯୁଗର ମାନବ ସମାଜ ପ୍ରଥମ ଶହ ସାହାଯ୍ୟରେ ଦେଖାଯାଇପାରେ । ଏ ସ୍ତରରେ କୌଣସି ପ୍ରକାର ପ୍ରତିବନ୍ଧକ ନାହିଁ — ସମାଜର ଗୋଟିଏ ସ୍ତର ଅନ୍ୟ ସ୍ତରଠାରୁ ଅଲଗା ହୋଇ ନାହିଁ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନର କେତେକ ଆଦିବାସୀ ଏକତ୍ର ବସବାସ କରି ରହୁଥିଲେ — ପରସ୍ପରକୁ ଶିକାର ପ୍ରଭୃତି କାର୍ଯ୍ୟରେ ସାହାଯ୍ୟ କରୁଥିଲେ — ଖାଦ୍ୟଫଳ ସମସ୍ତଙ୍କର ଥିଲା — ଅର୍ଥାତ୍ ସମସ୍ତେ ସମସ୍ତଙ୍କର ଦ୍ରବ୍ୟ ଏକାଠି ଭୋଗ କରୁଥିଲେ । ବ୍ୟକ୍ତିଗତ ସମ୍ପତ୍ତିର ଧାରଣା ହୋଇ ନଥିଲା । ତେଣୁ ଏହା ଗୋଟିଏ ଅପୃଥକ ଭୂତ ଓ ଶ୍ରେଣୀହୀନ ମାନବସମାଜ ।

ଦ୍ୱିତୀୟ ଶ୍ରେଣୀର ଶତ ଅନେକାଂଶ ଜାତି ଭେଦଭାବ ସୃଷ୍ଟି ଓ ସମାଜ ସମ୍ବନ୍ଧରେ ବ୍ୟବହୃତ ହୋଇଛି । ପ୍ରଥମେ ଜାତି ଭେଦ ସୃଷ୍ଟ ଦୃଢ଼ ନଥିଲା; ତେଣୁ ବ ୨ ୮ ଶତକର ଧ୍ୱଂସକାରୀ ଉପାଦାନ ମଧ୍ୟରେ

ଖୁବ୍ ସରୁ ରେଖା ଟଣା ହୋଇଛି ଯାହାକି ସହଜରେ ଭେଦ କରିହେବ—ଗୋଟିଏ ପାଖରୁ ଅନ୍ୟ ପାଖକୁ ଯିବାଲାଗି ଖୁବ୍ କଷ୍ଟକର ନଥିବାରୁ ବିଭିନ୍ନ ଶ୍ରେଣୀ ଭିତରେ ସଂଘର୍ଷଯୋଗୁଁ ସାମାଜିକ ଶକ୍ତି ଅପଥା ନଷ୍ଟ ବା ପ୍ରତିରୁଦ୍ଧ ହୁଏ ନାହିଁ—କ୍ଷୀଣ ରେଖା ସାମାନ୍ୟ ଟିକିଏ ଜୋର ପାଇଲେ ଭାଙ୍ଗିଯାଏ—ଅର୍ଥାତ୍ ଏଠାରେ ଶ୍ରେଣୀ ବିଭାଗ ଖୁବ୍ ଦୃଢ଼ ନୁହେଁ ବା ଏହା କେବଳ ଜନ୍ମଗତ ନୁହେଁ—ଦରକାର ହେଲେ କାମ ଅନୁସାରେ ପୁଣି ଶ୍ରେଣୀ ସବୁ ପୁନର୍ଗଠିତ ହୋଇଯାଏ । କିନ୍ତୁ 'ଗ' ଚିତ୍ରର ରେଖା ସବୁ ଖୁବ୍ ମୋଟା— ଗୋଟିଏ ପାଖରୁ ଅନ୍ୟ ପାଖକୁ ଗତିକରିବା ବଡ଼ କଷ୍ଟସାଧ୍ୟ ଅର୍ଥାତ୍ କ୍ରମେ ଶ୍ରେଣୀଗତ ବାଧା କଡ଼ା ହୋଇ ଆସିଲା ଓ ଭେଦ ଭାବ ବଢ଼ି ଚାଲିଲା । ଜାତିଭେଦ ଜନ୍ମଗତ ହୋଇପଡ଼ିଲା, ଫଳରେ ଜାତିଗତ ସଂଘର୍ଷ କ୍ରମେ ତୀବ୍ର ହୋଇ ଉଠିଲା । ସମାଜରେ ସଂକୀର୍ଣ୍ଣତା ଦେଖାଦେଲା ଏବଂ ଅନେକ ପ୍ରକାର କୁସଂସ୍କାର ମାନବ ସମାଜକୁ ଗ୍ରାସ କଲା । ସମାଜ ଗରିବ ହୋଇ ଆସିଲା— ରାଜ୍ୟ ପରପଦାନତ ହେଲା ଓ ସବୁ କ୍ଷେତ୍ରରେ ଅବନତି ଦେଖାଦେଲା ।

ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ପ୍ରକାର ସାମାଜିକ ଶ୍ରେଣୀ ବିଭାଗ ଯୋଗୁଁ ପ୍ରଥମେ ପ୍ରଥମେ ସମାଜର ଉନ୍ନତି ହୁଏ ସତ କିନ୍ତୁ ବିଭିନ୍ନ ବିଭାଗ ଭିତରେ ଅଖଣ୍ଡ ପ୍ରତିବନ୍ଧକ ଯୋଗୁଁ ଭୟଙ୍କର ଦ୍ୱନ୍ଦ୍ୱର ସୃଷ୍ଟି ହୁଏ । ବିଭିନ୍ନ ଶ୍ରେଣୀରେ ସଂଘର୍ଷ ଯୋଗୁଁ ଅପଥା ଶକ୍ତି ନଷ୍ଟହୁଏ—ସମାଜ ଏକତାବଦ୍ଧ ହୋଇ ରହିପାରେନା ।

ସମଗ୍ର ସମାଜର ଶକ୍ତି ସମୂହ ସମସ୍ତ ମାନବ ଜାତିର ଉପକାର ଲାଗି ବିନିଯୋଗ କରିଯାଇ ପାରେନା । ସାରା ମାନବ ସମାଜ ଏକତା-ବଦ୍ଧ ହୋଇ କାମ କଲେ ଦେଶ ଯେତେ ସୁଖୀ ଓ ସମୃଦ୍ଧିଶାଳୀ ହୁଅନ୍ତା, ତାହା ସମ୍ଭବ ହୋଇ ପାରେନା ।

ଉକ୍ତ ପ୍ରକାର ଶ୍ରେଣୀ ବିଭାଗ ଯୋଗୁ ଦେଶରେ ଭୟଙ୍କର ଅରାଜକତା ଦେଖାଦିଏ ଓ ସାମାଜିକ ଶକ୍ତି ଅସମ୍ଭବ ଭାବରେ ନଷ୍ଟ ହୁଏ । ଆମ ଦେଶର ପରିସ୍ଥିତି ଏହି ଅବସ୍ଥାରେ ରହିଛି । ଧର୍ମଗତ, ଜାତିଗତ, ଶିକ୍ଷାଗତ, ବ୍ୟକ୍ତିଗତ ସମ୍ପତ୍ତି, ପ୍ରାଦେଶିକତା ଏବଂ ଅନ୍ୟାନ୍ୟ ହଜାର ପ୍ରକାର ନ୍ୟସ୍ତସ୍ୱାର୍ଥ ଓ ସଙ୍କୀର୍ଣ୍ଣତା ଯୋଗୁଁ ସାରା ଦେଶ ସଂଘର୍ଷ ପୂର୍ଣ୍ଣ ହୋଇଉଠିଛି ତେଣୁ ଅଧିକାଂଶ ଲୋକେ ଏତେ ଅଭାବଗ୍ରସ୍ତ, ରୋଗାକ୍ରାନ୍ତ, କୁସଂସ୍କାରପୂର୍ଣ୍ଣ ଓ ପଦ-ପଦଦଳିତ ଅବସ୍ଥାରେ ପଡ଼ିଛନ୍ତି । ପ୍ରତ୍ୟେକ ଅନୁନ୍ନତ ଦେଶ ପ୍ରତି ଦୃଷ୍ଟି ଦେଲେ ବହୁ ଶ୍ରେଣୀବିଭାଗଜନିତ ଏ ପ୍ରକାର ସଂଘର୍ଷାତ୍ମକ ଅରାଜକତା ଦେଖାଯାଏ । କ, ଖ, ଗ, ଘ, ଏହି ସ୍କେଚ୍‌ଟି ଦେଶରେ ଅନେକ ଛୋଟ ଛୋଟ ରେଖା ବହୁ ସାମାଜିକ କ୍ଷେତ୍ରକୁ ବହୁ ଛୋଟ-ଛୋଟ ଦଳ ଭିତରେ ବିଭକ୍ତ କରି ରଖିଛି । ତା ଅର୍ଥ-ଦେଶରେ କୌଣସି କାମ କରିବାକୁହେଲେ ଏପରି ଅନେକ ବାଧା ଭିତର ଦେଇ ଗତି କରିବାକୁ ହୁଏ । ଶକ୍ତି ବିନା ବାଧାରେ ସହଜଭାବରେ ଗତି କରିପାରେନା । ଏଥିରେ ଦେଶର ଏତେ ଶକ୍ତି ନଷ୍ଟ ହୁଏ ଯେ କଳ୍ପନା କରି ହୁଏନା । ତାଛଡ଼ା ଯୁଦ୍ଧ ବିଗ୍ରହ ବା ଜାତୀୟ ସଙ୍କଟ ସମୟରେ ସମସ୍ତେ ଏକାଠି ମିଳି ମିଶି କାମ କରିବା ସମ୍ଭବ ହୁଏ ନାହିଁ । ବିଭିନ୍ନ ଦଳର ଭିନ୍ନ ଭିନ୍ନ ସ୍ୱାର୍ଥ ପରିଚାଳିତ ଶକ୍ତି ସମୂହ ଚାରିଆଡୁ ଆସି ଗୋଟିଏ ଘୂର୍ଣ୍ଣିବାତ୍ୟା ସୃଷ୍ଟି କରେ । ଏ ସମସ୍ତ ନଷ୍ଟ ଶକ୍ତି ଉପଯୁକ୍ତ ଭାବରେ ବ୍ୟବହାର

ନଷ୍ଟହୋଇଲେ ସମାଜର ଯେ ଅସମ୍ଭବ ଉନ୍ନତିର ପରିବର୍ତ୍ତନ ଘଟିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଅତଏବ, ସେଥିପ୍ରତି ଦୃଷ୍ଟି ଦେଲେ ସମାଜରୁ ଅରାଜକତା, ଅଶାନ୍ତି ଓ ଅନ୍ୟାନ୍ୟ ଅସାମାଜିକ ଘଟଣାର ଶେଷ ହେବ ନାହିଁ । ତୃତୀୟରେ ଗୃହୀତ ଜନସଂଖ୍ୟାକୁ ଏକାଠିକରି ଜନ ସୁବିଧାଅନୁସାରେ ପ୍ରତ୍ୟେକ ପରିବାରରେ ସେହିପରି ସମସ୍ତ ସାମାଜିକ ଶକ୍ତିକୁ ନିୟନ୍ତ୍ରିତ ଓ ଉପଯୁକ୍ତ ଭାବରେ ପ୍ରୟୋଗ କରାଯାଇ ପାରିବ ।

ଚତୁର୍ଥ ପ୍ରକାର ଶ୍ରେଣୀ ସଙ୍ଗ୍ରାମ ଯୋଗୁଁ ଉପରୋକ୍ତ ଅରାଜକତା ଦେଖା ଯାଏ ନାହିଁ ଏବଂ ଅସମ୍ଭବ ଉନ୍ନତିର ଉତ୍ପାଦନ ବୃଦ୍ଧି ଯୋଗୁଁ ଦେଶ ଶୀଘ୍ର ସମୃଦ୍ଧିଶାଳୀ ହୋଇଉଠେ । କିନ୍ତୁ ଏହି ବ୍ୟକ୍ତିଗତ ସମ୍ପତ୍ତିର ଉପରେ ନିର୍ଭର ଏବଂ କଳକାରଖାନା ଦ୍ୱାରା ଅର୍ଥନୈତିକ ଅନୁଷ୍ଠାନ ଓ ଉତ୍ପାଦନ ପ୍ରଣାଳୀ ମୁଷ୍ଟିମେୟ ପୁଞ୍ଜିପତିଙ୍କର ହସ୍ତଗତ ଅଧିକାରଭୁକ୍ତ ରହିଥିବାରୁ ସମାଜ ଧନୀ ପୁଞ୍ଜିପତି ଓ ସର୍ବହରା ମଜଦୁର ଏହି ଦୁଇଟି ବିରାଟ ଶ୍ରେଣୀରେ ବିଭକ୍ତ ହୋଇଯାଏ । ଦୁଇଟି ଶ୍ରେଣୀ ଭିତରେ ଗୋଟିଏ ସୁଦୃଢ଼ ପ୍ରତିବନ୍ଧକ ରହିଥିବାରୁ ଗୋଟିଏ ପାର୍ଶ୍ୱରୁ ଅନ୍ୟପାଖକୁ ଗତି କରିବା ବଡ଼ କଠିନ ହୋଇପଡ଼େ । ସର୍ବହରା ଶ୍ରେଣୀର ମାନବ ଶକ୍ତି ସଦା ବାଧାରେ ପୁଞ୍ଜିପତି ଶ୍ରେଣୀର ଆଡ଼େ ସବୁଦା ଗତି କରିବାକୁ ଚେଷ୍ଟା କରନ୍ତି; ଏବଂ ପୁଞ୍ଜିପତି ଶକ୍ତି ସେହି ପ୍ରତିରୋଧ ପାଇଁ ପ୍ରବଳ ଚେଷ୍ଟା କରେ ଫଳରେ ଦେଶ ଭିତରେ ଏକ ଭୟଙ୍କର ଶ୍ରେଣୀ ସଂଘର୍ଷ ଦେଖାଦିଏ ଏବଂ ସାମାଜିକ ବିପ୍ଳବ ଓ ଆନ୍ତର୍ଜାତିକ ଯୁଦ୍ଧରେ ଯୁଦ୍ଧ ବିଗ୍ରହର ମଧ୍ୟ ସୃଷ୍ଟି ହୁଏ । ତେଣୁ ଉପରୋକ୍ତ ପରସ୍ପରବିରୋଧୀ ଦୁଇଟି ବିରାଟ ଶକ୍ତିର ଉପଯୁକ୍ତ ସମାଧାନ ଓ ସମନ୍ୱୟସାଧନ ନ ହେବାଯାଏ ସମାଜରେ ଶାନ୍ତି ଓ ମାନବ ଶକ୍ତିର ପର୍ଯ୍ୟାପ୍ତ ବିକାଶ ଅସମ୍ଭବ ।

ତୃତୀୟ ସ୍ତରରେ ଦେଖାଯାଉଥିବା ଅବସ୍ଥା ସ୍ତରର ବେଶ ଉତ୍ଥାନ ଗତି କରୁଥିବା କେତେକ ଅନ୍ତରାୟ ଦେଖାଦେଇଥାଏ; କିନ୍ତୁ ସୁବିଧାଭୋଗୀ ସମ୍ପ୍ରଦାୟ ସମୂହ ଦ୍ୱାରା ନୁହେଁ—ଧାରଣ ବୃତ୍ତି ପରସ୍ପର ବିରୋଧୀ ଛୋଟ୍ ଶକ୍ତିଶାଳୀ ସାମାଜିକ ଶ୍ରେଣୀ ନିଜ ନିଜର ସ୍ୱାର୍ଥ ଲାଗି ସଚେତ ଓ ଜାଗ୍ରତ ନେତୃତ୍ୱପାଇଁ ଏବଂ ନିଜର ସ୍ୱାର୍ଥ-ସିଦ୍ଧିଲାଗି ସଂଘବଦ୍ଧ ଭାବରେ ରାଜ୍ୟିକ ଶକ୍ତି ପ୍ରୟୋଗ କରିବା ପାଇଁ ସମ୍ପ୍ରଦାୟ ସମୂହ ନୁହେଁ—ଅନେକ ଛୋଟ ଛୋଟ ଶ୍ରେଣୀ ଭିତରେ ସଂଘର୍ଷ ଲାଗିଥିବେ ସମ୍ଭବ ହୁଏ ନାହିଁ । କିନ୍ତୁ ଚତୁର୍ଥ ସ୍ତରରେ ଦେଖା ଯାଉଥିବା ଅବସ୍ଥାକୁ ସମାଜ ଆସିଲେ ଏହା ସହଜ ହୋଇପଡ଼େ ।

କିନ୍ତୁ ପଞ୍ଚମ ସ୍ତରରେ ଦେଖା ହୋଇଥିବା ଏପ୍ରକାର ଶ୍ରେଣୀହୀନ ସମାଜରେ କର୍ମରତ ଓ ବ୍ୟବସାୟ ରତ କାର୍ଯ୍ୟକଳାପ ଯୋଗୁଁ ଯେଉଁ ଶ୍ରେଣୀ ବିଭାଗର ସୃଷ୍ଟି ହୋଇଥାଏ ଏବଂ ପରସ୍ପର ଭିତରେ ସାମାନ୍ୟ ପ୍ରତିଯୋଗିତା ଜାରି ରହୁଥିଲେ ସୁଦ୍ଧା ଏଭଳି ଶ୍ରେଣୀ ବିଭାଗର ସୀମା କୃତ୍ରିମ ଓ ପରିବର୍ତ୍ତନଶୀଳ; ତେଣୁ ଗୋଟିଏ ବିଭାଗରୁ ଅନ୍ୟ ଗୋଟିଏ ବିଭାଗକୁ ଗତି କରିବା ଆଦୌ କଷ୍ଟକର ନୁହେଁ । ଏହା ଜନ୍ମଗତ ନୁହେଁ—ପ୍ରତ୍ୟକ୍ଷ କର୍ମଗତ, ତେଣୁ ବିଭିନ୍ନ ବିଭାଗ ଭିତରେ ଖୁବ୍ ବଡ଼ ଧରଣର ଦ୍ୱନ୍ଦ୍ୱ ଓ ସଂଘର୍ଷ ଜନ୍ମିପାରେନା । ସମଗ୍ର ସମାଜର ଶକ୍ତିସମୂହ ଏକା ଧାରାରେ କାର୍ଯ୍ୟକାରୀ ହୋଇପାରେ—ଫଳରେ ସମାଜ ଖୁବ୍ ଉନ୍ନତ ଓ ଶକ୍ତିଶାଳୀ ହୋଇଉଠେ ।

ଏପ୍ରକାର ଶ୍ରେଣୀହୀନ ସାମାଜିକ ସମସ୍ଥାପନ ଓ ସାମ୍ୟାବସ୍ଥା ମଧ୍ୟରେ ବ୍ୟକ୍ତିଗତ ବିକାଶ ସମ୍ଭବ ନୁହେଁ ବୋଲି ଅନେକ ମନେ କରନ୍ତି । କିନ୍ତୁ ପ୍ରକୃତରେ ତା ଠିକ୍ ନୁହେଁ । ଏପ୍ରକାର ସାମାଜିକ

ଏକତା ଉପରେ ଯେପରି ବ୍ୟକ୍ତିଙ୍କର ପୂର୍ଣ୍ଣ ବିକାଶ ଓ ପ୍ରକାଶ ସମ୍ଭବ । ମନୁଷ୍ୟ ଦେହର ପ୍ରତ୍ୟେକ ଜୀବକୋଷ ଯେପରି ସାରା ଦେହର ସମଷ୍ଟିଗତ ଏକତା ଓ ପରସ୍ପର ସହଯୋଗ ଉପରେ ନିର୍ଭର କରେ, କୌଣସି ନିର୍ଦ୍ଦିଷ୍ଟ ସାମାଜିକ ବ୍ୟକ୍ତିର ପୂର୍ଣ୍ଣ ବିକାଶ ମଧ୍ୟ ସୁଶୃଙ୍ଖଳ ଓ ଏକନିଷ୍ଠ ସାମାଜିକ ଜୀବନଯାପନ ପ୍ରଣାଳୀ ଉପରେ ନିର୍ଭର କରିଥାଏ । ଏହା ଆଜିର ଯୁଗର ସମାଜ ପକ୍ଷ ଅପ୍ରୟୋଜନୀୟ ଏକତା ନୁହେଁ ବରଂ ଏହା ସକଳ କଳା, ବିଜ୍ଞାନ, ଶିଳ୍ପ, ବ୍ୟବସାୟ ପ୍ରଭୃତିରେ ପାରଦର୍ଶିତା ଲାଭକରିଥିବା ଉଚ୍ଚ ସ୍ତର-ଧରଣର ବ୍ୟକ୍ତି ବା ଦଳ ସମୂହର ପରସ୍ପର ସହଯୋଗ ସମନ୍ୱୟ ସଂଯୋଜିତ ସମ୍ପ୍ରସାରଣ । ଏପରି କ୍ଷେତ୍ରରେ ପ୍ରତ୍ୟେକ ଦକ୍ଷତା-ସମ୍ପନ୍ନ ଦଳର ଶକ୍ତି ଅନ୍ୟ କୌଣସି ଦଳର ଶକ୍ତି ବିରୁଦ୍ଧରେ କାମ କରେନା କିମ୍ବା ଏପରି ସାମାଜିକ ଦ୍ୱନ୍ଦ୍ୱ ସୃଷ୍ଟି କରେନା । ଅସଂଖ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ଝରଣା ବାଧା ନପାଇଲେ ଯେପରି ଗୋଟିଏ ବିରାଟ ସ୍ରୋତସ୍ୱିନୀ ସୃଷ୍ଟି କରେ, ଶ୍ରେଣୀହୀନ ସମାଜର ବିଭିନ୍ନ ପରିବର୍ତ୍ତନଶୀଳ ଗୋଷ୍ଠୀଗତ ମାନବିକ ଶକ୍ତି ସେହିପରି ଶକ୍ତିଶାଳୀ । କିନ୍ତୁ ନାନାସ୍ଥାନରେ ବହୁ ବାଧା ପାଇଲେ ଯେପରି ସ୍ରୋତ ସରୁ ଦୁର୍ବଳ ହୋଇଯାଏ ଏବଂ ଗୋଟିଏ ମୁଖ୍ୟ ପ୍ରବାହ ପରିବର୍ତ୍ତେ ଅନେକ ମୃତ ଏ କର୍ଦ୍ଦମାକ୍ତ ଦୁର୍ଗନ୍ଧ କ୍ଷୁଦ୍ର ନାଳ ସୃଷ୍ଟି ହୁଏ, ସେହିପରି ଆମଦେଶର ଜାତିଭିତ୍ତିକ ସମାଜ ଅସଂଖ୍ୟ କ୍ଷୁଦ୍ର ଶ୍ରେଣୀ ଭିତ୍ତିକ ଓ ବ୍ୟକ୍ତି ନାନା ଭାବରେ ଶୋଷଣ-ପୀଡ଼ିତ ହୋଇଥିବାରୁ ଆମ ସମାଜ ଏତେବେଶି ଦୁର୍ବଳ ଓ ଅନୁନ୍ନତ ।

—*—

## ମନୁଷ୍ୟ ମନ ଉପରେ ଶ୍ରେଣୀବିଭାଗର ପ୍ରଭାବ

ବ୍ୟକ୍ତି ବା ମନୁଷ୍ୟ ସମଷ୍ଟିର ମନୋବୃତ୍ତି ସେହି ପ୍ରକାର ପ୍ରଚଳିତ ସାମାଜିକ ଶିକ୍ଷା, ସଂସ୍କାର, ଐତିହାସିକ ପ୍ରଭାବ, ପରିବେଶ ପ୍ରଭୃତି ଉପରେ ନିର୍ଭର କରେ । ଶିଶୁ ଜନ୍ମହେଲା ବେଳକୁ ସୁସ୍ଥ ବା ଦୁର୍ବଳ ଅଙ୍ଗପ୍ରତ୍ୟଙ୍ଗ ଓ ଶରୀରରକ୍ଷା ଲାଗି କେତୋଟି ସ୍ୱାଭାବିକ ପ୍ରବୃତ୍ତି ଛଡ଼ା ଅନ୍ୟ କୌଣସି ପ୍ରକାର ଅଭିଜ୍ଞତା ବା ଅନୁଭୂତ ଭାବ ନ ଥାଏ । ଏହା ଠିକ୍ ଭାବରେ କୁହାଯାଇ-ପାରେ ଯେ ତା ମନ ଜନ୍ମରେ ପୂର୍ବ ପ୍ରବୃତ୍ତିକୁ ଅର୍ଜିତ ଶିକ୍ଷା ଓ ଜ୍ଞାନ ସମ୍ପର୍କରେ କୌଣସି ରେଖା ପଡ଼ି ନ ଥାଏ । ଦାର୍ଶନିକଙ୍କ ଭାଷାରେ କୌଣସି ଚିହ୍ନ ବା ରେଖାଶୂନ୍ୟ ଫଳକସ୍ୱରୂପ ଟେମ୍ପ୍ଟ୍ ଅଣ୍ଡିଏ ଟିଏ ଏମାନଙ୍କର ମନ ଏବଂ ପରେ ଏଥିରେ ସମସ୍ତ ପ୍ରକାର ଅଭିଜ୍ଞତା ବାହ୍ୟେନ୍ଦ୍ରିୟ ସାହାଯ୍ୟରେ ଲିପିବଦ୍ଧ ହୁଏ । ଏପ୍ରକାର ମତବାଦରେ ଅନେକ ବାଦାନୁବାଦ ଥିଲେ ମଧ୍ୟ ମନୁଷ୍ୟ ଜୀବନରେ ଏହାର ଆବଶ୍ୟକତା ଯେ କେତେ ବେଶି, ତାହା କେହି ସନ୍ଦେହ କରନ୍ତି ନାହିଁ । ତାପରେ ବ୍ୟକ୍ତିବିଶେଷ ତାର ପଞ୍ଚ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ସେଉଁ ଜ୍ଞାନ ଅର୍ଜନ କରି ବସେ ସେସବୁ ତାର ନିଜ ମସ୍ତିଷ୍କପ୍ରସୂତ ନୁହେଁ, ଅର୍ଥାତ୍ ସେ ସ୍ୱୟଂକୁ ସ୍ୱାଧୀନ ଭାବରେ ତା ମନ ଭିତରେ ଜ୍ଞାନ ସୃଷ୍ଟି କରେ ନାହିଁ । ସେ ଚକ୍ଷୁ କର୍ଣ୍ଣ ପ୍ରଭୃତି ଇନ୍ଦ୍ରିୟ ସାହାଯ୍ୟରେ ସମାଜ ଦେଉଥିବା ଜ୍ଞାନକୁ ଗ୍ରହଣ କରେ । ମନୁଷ୍ୟ ଶିଶୁ ଏହି ଜ୍ଞାନକୁ ଜନ୍ମ ପରଠାରୁ ଗ୍ରହଣ କରିଥାଏ ଏବଂ ସେଗୁଡ଼ିକରେ ତାର ସମାଲୋଚନା ବା ଦୋଷଗୁଣ ବିଚାର କରିବାର ଶକ୍ତି ଆସେ, ସେଗୁଡ଼ିକ ତାର ମନମଧ୍ୟରେ ଅନେକଗୁଡ଼ିଏ ବଦ୍ଧମୂଳ ଧାରଣା, ଧାରଣି

ତା ବୃହତ୍ ଘରେର ମାତ୍ର କମ୍ପି ଯାଉଥାଏ । ତେଣୁ ତାର ପରବର୍ତ୍ତୀ ସମସ୍ତ ପ୍ରକାର କାର୍ଯ୍ୟକଳାପ, ଚାଲିଚଳଣ, ସଙ୍କୋଚ, ଜୀବ ଆଚରଣ ପ୍ରଣାଳୀ ଏବଂ ବଦ୍ଧମୂଳ ଧାରଣାସବୁ ତା'ର ନିୟନ୍ତ୍ରିତ ହୋଇଥାଏ । ସାମାନ୍ୟ କେତେକ ଜଣ ମହାମାନବ ଦୃଢ଼ ପରିଚ୍ଛନ୍ନଜ୍ଞାନ ଓ ଅନ୍ତର୍ଦୃଷ୍ଟି ହାସଲ କଲାପରେ ଏ ପ୍ରକାର ବ୍ୟୂହରୁ ନିଜକୁ ମୁକ୍ତ କରି ପାରନ୍ତି—ତଥାପି ପୂରା ସମ୍ପୂର୍ଣ୍ଣ ଭାବରେ ନୁହେଁ । କିନ୍ତୁ ଏମାନଙ୍କ ସଂଖ୍ୟା ବହୁ କମ୍ । ସାଧାରଣ ମନୁଷ୍ୟ କ୍ଷେତ୍ରରେ ଏହା ସମ୍ଭବ ନୁହେଁ ।

ମନୁଷ୍ୟର ମନ କହିଲେ ତାର ସମସ୍ତ ପ୍ରକାର ଅତୀତର ଅଭିଜ୍ଞତା, ପ୍ରବୃତ୍ତିଗତ ଇଚ୍ଛା, ବ୍ୟକ୍ତିଗତ ସାମାଜିକ ଆଦର୍ଶ ଦୃଷ୍ଟିକୁ ବୁଝାଯାଏ; ଏବଂ ଏସବୁ ପର ସାମାଜିକ ଶିକ୍ଷା ଦୀକ୍ଷା ଉପରେ ନିର୍ଭର କରେ ତା ହେଲେ ମନୁଷ୍ୟର ମନକୁ ସାମାଜିକ ପରିସ୍ଥିତି ଦୃଷ୍ଟିରୁ ବିଶ୍ଳେଷଣ କରାଯାଇ ପାରେ, ଅର୍ଥାତ୍ ସମାଜର ଅବସ୍ଥା ଅନୁସାରେ ମଣିଷ ମନର ପ୍ରବୃତ୍ତି ଗଢ଼ି ଉଠିଥାଏ ଯୋଡ଼ିଏ ସମାଜର ଯଦି ଅଧିକାଂଶ ଲୋକେ ଚୋର, ଗୁଣ୍ଡା, ମିଥ୍ୟାବାଦୀ ଓ ବ୍ୟଭିଚାରୀ, ଏବଂ ଆଉ ଯୋଡ଼ିଏ ସମାଜର ଲୋକେ ଅପେକ୍ଷାକୃତ ଭଲ, ତା ହେଲେ ଏହା ନିଶ୍ଚୟ ସାମାଜିକ ପରିସ୍ଥିତି ଯୋଗୁଁ ସମ୍ଭବ ବୋଲି କହିବାକୁ ହେବ । ଆମ ସମାଜ ସହିତ ଇଂରେଜ ଜାତିର ସମାଜ କିମ୍ବା ଅନ୍ୟାନ୍ୟ ଉନ୍ନତ ଦେଶର ସମାଜ ତୁଳନା କଲେ ଆମେ ଯେଉଁ ତଫାତ୍ ଦେଖିପାରୁ, ତାହା କଦାପି ରକ୍ତଗତ ହୋଇ ପାରେନା—ହିଟଲରର ଅମିଶ୍ରଣ ଆର୍ଯ୍ୟରକ୍ତ ମତବାଦ ସମ୍ପୂର୍ଣ୍ଣ ଭ୍ରମାତ୍ମକ । ଏହା ଭିନ୍ନ ଭିନ୍ନ ପରିସ୍ଥିତିର ଅର୍ଥନୈତିକ, ରାଜନୈତିକ, ସାମାଜିକ କାରଣ ଯୋଗୁଁ ବିଭିନ୍ନ ପ୍ରକାର ଦେଖାଯାଇଥାଏ ।

'କ' 'ଗ' ଚିତ୍ରରେ ମନୁଷ୍ୟ ଶ୍ରେଣୀର ଉକ୍ତ ଗାର ସାହାଯ୍ୟରେ
ଦେଖା ହୋଇଛି । ଶକ୍ତି ବାଧାପ୍ରାପ୍ତ ହୋଇ ପୁଣି ଫେରି ଆସୁଛି,
ଅର୍ଥାତ୍ ପ୍ରତ୍ୟେକ ଦଳର ଓ ବ୍ୟକ୍ତିବିଶେଷର ଚତୁର୍ଦ୍ଦିଗ କ୍ଷେ
ତ୍ର ସୀମାବଦ୍ଧ କ୍ଷୁଦ୍ର କ୍ଷୁଦ୍ର କ୍ଷେତ୍ର ଭିତରେ ହିଁ ଆବଦ୍ଧ ରହୁଛି—
ବାହାରକୁ ବାହାରି ଆସି ପାରୁନ । ଫଳରେ ପ୍ରତ୍ୟେକ ବ୍ୟକ୍ତି
ମନରେ ଓ ଦଳ ଭିତରେ ଗୋଟିଏ ପ୍ରକାର mental tension
ବା ଗଭୀର ମାନସିକ ଉତ୍ତେଜନା ଦେଖାଦିଏ । ଏ ପ୍ରକାର
ଉତ୍ତେଜନା ସାମାଜିକ ସମ୍ପର୍କ ବା ବ୍ୟକ୍ତି ବିଶେଷର ମାନସିକ
ଏକାନ୍ତ ପକ୍ଷରେ ଆଦୌ ସ୍ୱାସ୍ଥ୍ୟକାରକ ନୁହେଁ । ମାନସିକ
ଉତ୍ତେଜନା ସାଥିରେ ଜାତିଗତ ବା ଶ୍ରେଣୀଗତ ଶତ୍ରୁତା ଓ ବିଦ୍ୱେଷ
ମିଶି ରହିବା ସ୍ୱାଭାବିକ । ଉତ୍ତେଜନାର ତୀକ୍ଷ୍ଣତା ଉପରେ ସ୍ତୁ
ବିପୁଳ ବା ସାମାନ୍ୟତା ପ୍ରକୃତ ଅଶାନ୍ତି ନିର୍ଭର କରିଥାଏ ।
ଗୋଟିଏ ସୀମା ଭିତରୁ ପାର ହୋଇ ଅନ୍ୟ ସୀମାକୁ ଯିବାଲାଗି
ଯେଉଁ କ୍ଷଣମାନଙ୍କରେ ସମଗ୍ର ଦଳର ବ୍ୟଗ୍ରତା ବଢ଼ି ଉଠେ, ସେହି
କ୍ଷଣମାନଙ୍କରେ ଶକ୍ତିର ବେଗ ଓ ତୀକ୍ଷ୍ଣତା ତେଜ ଉଠେ ଏବଂ
ଦୁଇଦଳ ଭିତରେ ଥିବା ସାମାନ୍ୟ ସୀମା ଟୁଟି ଭାଙ୍ଗିଯାଏ ।
ଏକପାର୍ଶ୍ୱର ପ୍ରତିରୋଧକାରୀ ଶକ୍ତି ଓ ଅନ୍ୟ ପାର୍ଶ୍ୱ ଶକ୍ତିର ବଳ
ବେଗ ଓ ତୀକ୍ଷ୍ଣତା ଉପରେ ଉଭୟର କ୍ଷତି ଓ ନୃଶଂସତା ନିର୍ଭର
କରେ । ଅଗ୍ରଗାମୀ ଶକ୍ତିର ବଳ କମ ହେଲେ ସୀମାର ପ୍ରତିରୋଧ
ଆଗରେ ପରାସ୍ତ ହୋଇ ପୁଣି ନିଜ ସୀମା ଭିତରକୁ ଫେରିଆସେ
କିନ୍ତୁ ଏହି ପରାଭୂତ ଶକ୍ତି ସେହିଠାରେ ନଷ୍ଟ ହୋଇଯାଏ ନାହିଁ ।
ମନର ଅତଳ ଦେଶରେ ପ୍ରଚ୍ଛନ୍ନ ଭାବରେ ଏହା ବାସ କରୁଥାଏ ।
ସାମାନ୍ୟ ଟିକିଏ ସୁବିଧା ପାଇଲେ ପୁଣି ଜାଗିଉଠେ ଏବଂ ହଠାତ୍
ସାମାଜିକ ଜୀବନରେ ଭୂମିକମ୍ପ ଓ ଅଗ୍ନ୍ୟୁତ୍ପାତର ସୃଷ୍ଟି ହୁଏ ।

ହିନ୍ଦୁ ମୁସଲମାନ ବିଦ୍ୱେଷ ଏ ପ୍ରକାର ଲୁକ୍କାୟିତ ମାନସିକ ପ୍ରତିକ୍ରିୟାର ଫଳ । ଦେଶବ୍ୟାପୀ ଅସ୍ୱଚ୍ଛଳତା ମନ୍ଦା ସ୍ପନ୍ଦନ ଶ୍ରେଣୀ ଶ୍ରେଣୀ ଅଶାନ୍ତିର [illegible] ବୃଦ୍ଧି ହୋଇଥାଏ । ଚୋରି, ଡକାୟତି, ନାରୀହରଣ, ନରହତ୍ୟା ପ୍ରଭୃତି ନାନାପ୍ରକାର ଅସାମାଜିକ ଘଟଣା ଏବଂ ମାନସିକ ରୋଗର ଯୋଗସୂତ୍ର ଦେଖା-ଦେଇଥାଏ । ବାହାର ପ୍ରବଳ ଶକ୍ତି ଆଗରେ ଶ୍ରେଣୀ ସିଧା ସାମନା ସାମନି ସଂଘର୍ଷ ମାନି ନେଲେ ସୁଦ୍ଧା ତା ପଛରେ ଅନେକ ଶ୍ରେଣୀ ଶ୍ରେଣୀ ବିଦ୍ୱେଷ ଜମା ହୋଇ ମନ କଣ୍ଠଥିବା କଥାଗୁଡ଼ିକ ଜଣେ ବାଗ ଉପରେ ସେପରି ପ୍ରତିଶୋଧ ନିଏ—କୌଣସି ଦଳର ଅନ୍ୟ ଦଳ ପ୍ରତି ବିଦ୍ୱେଷ ଓ ପ୍ରତିଶୋଧ ସେହିପରି ପରୋକ୍ଷ ଭାବେ ଶ୍ରେଣୀ ଶ୍ରେଣୀ କଥାରେ ଦେଖାଦେଇଥାଏ । ଅନେକ ଜାଗାରେ ଅନୁନ୍ନତ ଜାତିର କୌଣସି କୌଣସି ଦଳକୁ ଚିରସ୍ଥାୟୀ 'ଦାଗୀ' ବୋଲି ଅଭିହିତ କରାହୋଇଥାଏ । ସେମାନଙ୍କ ଭିତରୁ ଅଧିକାଂଶ ଚୋରି କରି ବାସ୍ତୁ କିନ୍ତୁ ଏମାନଙ୍କର ଏ ବ୍ୟବହାର ଲାଗି ସମାଜ ଦାୟୀ । ସେହି ପ୍ରତିଶୋଧ ପ୍ରକାଶ୍ୟରେ ସମ୍ଭବ ନୁହେଁ, ତାହା ବିକୃତ ରୂପରେ ଦେଖାଦେଇଥାଏ । ଦୁଇଟି ସାମାଜିକ ଶ୍ରେଣୀ ଭିତରେ ଏ ପ୍ରକାର ଶତ୍ରୁତା ଓ ପ୍ରତିଶୋଧ ନେବାର ବ୍ୟଗ୍ରତା ବଡ଼ ଭୟଙ୍କର ଫଳ ଦିଏ । କିନ୍ତୁ ଯେତେବେଳେ ସମାଜ ଶହ ଶହ କ୍ଷୁଦ୍ର ଶ୍ରେଣୀରେ ବିଭକ୍ତ ହୋଇଯାଏ ଓ ପ୍ରତ୍ୟେକ ଭିତରେ ଏହିପରି ଶତ୍ରୁତା ଦେଖାଦିଏ, ସେତେବେଳେ କି ଭୟାବହ ପରିସ୍ଥିତି ସୃଷ୍ଟି ହୁଏ, ତାହା ସହଜରେ ଅନୁମେୟ ।

ଉପରୋକ୍ତ ଦ୍ୱନ୍ଦ୍ୱମୂଳ ଓ ଶ୍ରେଣୀ ସ୍ୱତନ୍ତ୍ର ସାମାଜିକ କ୍ଷେତ୍ରରେ ଦଳବଦ୍ଧ ଲୋକଙ୍କର ସ୍ଥାନ ଓ ମର୍ଯ୍ୟାଦା ଅନୁସାରେ ବ୍ୟକ୍ତିବିଶେଷର

ମନୋବୃତ୍ତି ଗଠିତ ହୋଇଥାଏ । ନିମ୍ନଶ୍ରେଣୀର ଲୋକେ ନିଜକୁ ଅପେକ୍ଷାକୃତ ନିକୃଷ୍ଟତର ବୋଲି ଭାବନ୍ତି ଏବଂ ଉପର ଶ୍ରେଣୀର ଲୋକେ ନିଜ ନିଜର ଶ୍ରେଷ୍ଠତା ଔଦ୍ଧତ୍ୟପୂର୍ବରେ ବଡ଼ିମା କରନ୍ତି ଏସବୁର କେତେକଙ୍କର ନିଜକୁ ହୀନଚକ୍ଷୁରେ ଦେଖିବା ଓ ଆଉ କେତେକଙ୍କର ଅଯଥା ଆତ୍ମବଡ଼ିମା ଯୋଗୁଁ ଉଭୟଙ୍କ ଭିତରେ ଅନେକ ପ୍ରକାର ମାନସିକ ବିକୃତି ମଧ୍ୟ ଦେଖା ଦେଇଥାଏ । ଜଣେ ଦରିଦ୍ର ପିଲା ଅଭାବ, ଈର୍ଷା ଓ ଅଚେତନ ମନର ଅବଦମିତ ପ୍ରତିଶୋଧ ପ୍ରବୃତ୍ତି ଯୋଗୁଁ ଚୋର ଡକାଏତ ହୁଏ । ଉପରଶ୍ରେଣୀର ଜଣେ ଧନୀ ଲୋକର ପିଲା ନିଜର ଶକ୍ତି ବା ପ୍ରତିଷ୍ଠା ତଥା ବୁଦ୍ଧି ଅଭାବରୁ ପର ଗଳକ ହୋଇଯାଏ କିମ୍ବା ବଂଶପରମ୍ପରା ଗୌରବ ଅକ୍ଷୁଣ୍ଣ ରଖିବାରେ ଅସମର୍ଥ ହୁଏ ତା ହେଲେ ସାମାନ୍ୟ ଟିକେ ଆଘାତରେ ପାଗଳ ହୋଇଯାଏ କିମ୍ବା ଅସାମାଜିକ କାର୍ଯ୍ୟରେ ନିଜକୁ ବୁଡ଼ାଇ ରଖେ । ଅବଶ୍ୟ ଏ ପ୍ରକାର ମାନସିକ ବିକୃତି ଯେ ସମସ୍ତଙ୍କର ହେବ ତା ନୁହେଁ, କିନ୍ତୁ ଏ ପ୍ରକାର ଶ୍ରେଣୀ ବିଭକ୍ତ ସମାଜରେ ଏହା ବହୁତ ବେଶି ଦେଖାଯାଏ । ଖାଲି ସେତିକି ନୁହେଁ, ଅତ୍ୟଧିକ ମାତ୍ରାରେ ନିଜକୁ ହୀନ ମନେକରିବା କିମ୍ବା ଅପେକ୍ଷାକୃତ ଶ୍ରେଷ୍ଠ ବା ନିଜକୁ ଖୁବ୍ ବଡ଼ ବୋଲି ଭାବିବା ଫଳରେ ନାନାପ୍ରକାର ମାନସିକ ଦ୍ୱନ୍ଦ୍ୱ ଦେଖାଯାଇଥାଏ ଏବଂ ଅନେକେ ଏହିଭଳି ଅଚେତନ ମନଭିତରେ ବିବେକ ଦ୍ୱାରା ଦୋଷୀ ବୋଲି ଅଭିଯୁକ୍ତ ହୋଇ ନାନାପ୍ରକାର ଅକାରଣ ଭୟ ଓ ଚିନ୍ତାରେ ଅସ୍ଥିର ହୁଅନ୍ତି । ଉଚ୍ଚ ବର୍ଗର ଶ୍ରେଣୀ ବା ଧନୀ ଭିତରେ ଏତେ ବେଶି ପ୍ରତିବନ୍ଧକ ଓ ପ୍ରତିରୋଧ ନଥାନ୍ତା ଏବଂ ଉଭୟର ଭିତରେ ଆକାଶ ପାତାଳ ପ୍ରଭେଦ ନଥାନ୍ତା

ତା'ହେଲେ ଏ ପ୍ରକାର ଦ୍ୱନ୍ଦ୍ୱ ଓ ଜଟିଳତା ଦେଖାଯାଆନ୍ତା ନାହିଁ । ସେଥିପାଇଁ ସେଠାରେ ମାନସିକ ଦ୍ୱନ୍ଦ୍ୱ ଓ ଜଟିଳତାର ସମସ୍ତ ପ୍ରକାର କୁଫଳର ମଧ୍ୟ ଅବକାଶ ରହନ୍ତା ନାହିଁ । ପ୍ରତ୍ୟେକ ବ୍ୟକ୍ତିର ମନ ଭିତରେ ଏକଣ ଅନେକ ଗୁଡ଼ିଏ ବିପ୍ରମୁଖୀ ଉତ୍ତେଜକ ଶକ୍ତିର ସଂଘର୍ଷ ଲାଗିଥିବାରୁ ସେ ବଳିଷ୍ଠ ମନୋଭାବ ସହ କାର୍ଯ୍ୟରେ ଅଗ୍ରସର ହୋଇ ପାରେନା ଏବଂ ଫଳରେ ଅଧିକାଂଶଙ୍କ ପକ୍ଷରେ ସମଗ୍ର ମାନସିକ ବିକାଶ ସମ୍ଭବ ହୁଏ ନାହିଁ । ବିଶେଷତଃ ଶିକ୍ଷିତମାନଙ୍କ ଭିତରେ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱ ବେଶୀ ଦେଖାଯାଏ । ସେମାନେ ଶ୍ରେଣୀ ବିଭାଗର କୁପରିଣାମ ଫଳ ସମ୍ବନ୍ଧରେ ସଚେତ ଥିଲେ ସୁଦ୍ଧା ନିଜକୁ ସେ ବ୍ୟୂହ ମଧ୍ୟରୁ ମୁକ୍ତ କରି ପାରନ୍ତି ନାହିଁ । ଫଳରେ ଭୟଙ୍କର ମାନସିକ ସଂଘର୍ଷ ଲାଗିରହେ । ପ୍ରତ୍ୟେକ କଥାରେ ସେମାନଙ୍କ ଭିତରେ ଯେପରି ଦୁଇଟି ମନ କାମ କରୁଥାଏ—ଗୋଟିଏ ସଭାସମିତିରେ ବକ୍ତୃତା କରୁଥାଏ—ଲୋକଙ୍କୁ ଅନ୍ୟାୟ ବିରୁଦ୍ଧରେ ବୁଝାଉଥାଏ; କିନ୍ତୁ ଘରକୁ ଫେରିଲା ପରେ ଅନ୍ୟ ମନଟି ଠିକ୍ ତାର ଓଲଟା କାମ କରୁଥାଏ—ନିଜ ଦଳଗତରୁ କୌଣସିମତେ ନିଜକୁ ମୁକ୍ତ କରି ପାରିବାର ଅସଲ କ୍ଷମତା ଏମାନଙ୍କର ନ ଥାଏ । ଏ ପ୍ରକାର ଦୁଇ ବା ତତୋଽଧିକ ଅଂଶରେ ବିଭକ୍ତ ମନ ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ଲାଗି ଭୟଙ୍କର କ୍ଷତି କାରକ ।

ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ବ୍ୟତୀତ ଆହୁରି ଅନେକ ପ୍ରକାର ମାନସିକ ସଙ୍କୀର୍ଣ୍ଣତା ମଧ୍ୟ ଦେଖାଯାଏ । ଗୋଟିଏ ଦଳରୁ ଅନ୍ୟ ଦଳ ଭିତରକୁ ସାମାଜିକ ଗମନାଗମନ ସହଜ ନଥିବାରୁ ଜାତିପ୍ରସୂତ ବହୁ ସମସ୍ୟା ହୋଇପଡ଼େ । କାପୁରୁଷତା, ସଙ୍କୀ

ରଟେନ୍ୟାର୍‌, ସିନେମା, ଛାପ ଅକ୍ଷର ପ୍ରଭୃତି ଭଳି ସାଧାରଣ ଜନୋପଯୋଗୀ ନ ହୋଇ ଖାଲି ଉଚ୍ଚ ଶ୍ରେଣୀ ମଧ୍ୟରେ ଆବଦ୍ଧ ହୋଇପଡ଼େ । ବର୍ତ୍ତମାନ ଆମଦେଶର ସାହିତ୍ୟ ପଢ଼ିଲେ ଏହାର ସଙ୍କୀର୍ଣ୍ଣତା ସହଜରେ ଉପଲବ୍ଧି କରିହୁଏ । ସେଥିରୁ ଗୋଟିଏ ଉଚ୍ଚ ପୁରୁଣା ଗଳ୍ପବସ୍ତୁ—ଜମିଦାରର ପୁଅ ସହିତ ଜମିଦାରର ଝିଅ—କଲେଜ ପୁଅ ଓଡ଼ିଆ କଲେଜ ଝିଅ—ବ୍ରାହ୍ମଣ ଭରଣ ପ୍ରଭୃତି ଉଚ୍ଚ ଜାତିର ଆଦର୍ଶରେ ଅଧିକାଂଶ ସାହିତ୍ୟ ଅନୁପ୍ରାଣିତ । ଯେଉଁଠି ଗରିବ ଝିଅ ସହିତ ଜମିଦାରର ପୁଅ କିମ୍ବା ବ୍ରାହ୍ମଣ ପିଲା ସହିତ ହରିଜନ ଝିଅର ପ୍ରେମ ନେଇ ଶ୍ରେଣୀଗତ ଦ୍ୱନ୍ଦ୍ୱ ଦେଖାଇବାର ଚେଷ୍ଟା ହୁଏ ସେଥିରେ ମଧ୍ୟ ସାହିତ୍ୟିକର ସ୍ୱତନ୍ତ୍ର ଅନୁଭୂତିର ପ୍ରକାଶ ପାଇବାର ଦେଖାଯାଏ ନାହିଁ—ଦୁଇଜଣଙ୍କ ଭିତରୁ ଜଣଙ୍କୁ ଆତ୍ମହତ୍ୟା କିମ୍ବା ଦୁର୍ଘଟଣା ଦ୍ୱାରା ମରିବାକୁ ହୁଏ । ମୋଟାମୋଟି କଳା କେବଳ ଉଚ୍ଚ ଶ୍ରେଣୀର ଆଦର୍ଶ ଭିତରେହିଁ ଆବଦ୍ଧ ହୋଇରହେ । ଗଣତାନ୍ତ୍ରିକ ସମାଜରେ କଳାର ଯେଉଁ ସ୍ୱରୂପ ଓ ସ୍ୱତନ୍ତ୍ରିତ ମୂଲ୍ୟଦୃଷ୍ଟି ଦେଖାଯିବାର କଥା ତାହା ଏପ୍ରକାର ସମାଜରେ ସମ୍ଭବ ହୋଇ ପାରେ ନା ଏବଂ ଅନେକ ସମୟରେ ଏପରି ଭଳି ବା ନୂତନ ଟେକ୍‌ନିକ୍ ଉଠିଆସିଲେ ସୁଦ୍ଧା ଏହାର ପ୍ରତ୍ୟେକ ପରିମାଣ କଳୁଷ୍ମୀ ଅଗ୍ରସର ଏତେ ଦୁର୍ବଳ ଓ ଏହାର ମୂଳଶକ୍ତି ଏତେ ଅପ୍ରଶସ୍ତ ଯେ ପୁଞ୍ଜି-ବାଦର, ଅର୍ଥ ନୈତିକ ସଙ୍କଟ ସମୟରେ ଏହା ଅତି ଶୀଘ୍ର ନଷ୍ଟ ହୋଇଯାଏ । ସାହିତ୍ୟିକ ଓ କଳାକାରଙ୍କର ସୃଷ୍ଟି କରିବା ଶକ୍ତି ବାଧାହୋଇ ବଡ଼ ଦୁର୍ବଳ ହୋଇପଡ଼େ ଏବଂ ସାହିତ୍ୟ ଓ କଳାରେ ନବୀନ ଶକ୍ତିର ପରିପୂର୍ଣ୍ଣ ସାହିତ୍ୟ ପ୍ରକାଶ ପାଏ ନାହିଁ । ଅନେକ ସମୟରେ ସାହିତ୍ୟିକମାନେ ସାମାଜିକ ଜୀବନରେ ଅସହ୍ୟ ଧକ୍କା ଖାଇ

ଅଥବା ବ୍ୟର୍ଥତାରେ ମ୍ରିୟମାଣ ହୋଇ ଅଗ୍ରଗାମୀ ଜୀବନ ସ୍ରୋତର ଦୂରକୁ ପଳାଇ ଯାଆନ୍ତି । ଏହି ପଳାୟନପନ୍ଥୀ କଳାକାରମାନେ ସାହିତ୍ୟ ଓ କଳାକୁ ମନୁଷ୍ୟ ଜୀବନଠୁ ଦୂରକୁ ଠେଲି ଆଣି, କେବଳ ନିର୍ମଳ, କେବଳ ସାହିତ୍ୟ ସେବାରେ (art for art's sake) ନୀତିକୁ ଅବାଧ ରଖିବାରେ ଚେଷ୍ଟା କରନ୍ତି । ଏହାକୁ ସାହିତ୍ୟରେ ଦୁର୍ବଳ ମନର ପରାସ୍ତ ମନୋଭାବ ବୋଲି ଧରିବାକୁ ହେବ । ଯେଉଁ ସାହିତ୍ୟ ଓ କଳା ଦୃଢ଼ଭାବରେ ଜୀବନ ସ୍ରୋତର ମଧ୍ୟ ଭାଗରେ ଠିଆ ହୋଇ ସମାଜର ସମସ୍ତ ପ୍ରକାର ଅତ୍ୟାଚାର ବନ୍ଧନ ଓ କୁସଂସ୍କାର ବିରୁଦ୍ଧରେ ନିର୍ଭୀକ ଭାବରେ ଟଣ୍ଡ କରି ନପାରେ, ତାହା ମାନବର ସାହିତ୍ୟ ପଦବାଚ୍ୟ ନୁହେଁ । କ୍ଷୁଦ୍ର ଝରଣାର ଅତି କ୍ଷୁଦ୍ର ଜଳଧାର ସାମାନ୍ୟ ଟିକିଏ ଆଘାତ ପାଇଲେ ଖଣ୍ଡି ପଥକୁ ଫେରି ଆସେ କିନ୍ତୁ ବହୁଶକ୍ତିଶାଳୀ ତରଙ୍ଗ ଜଳପ୍ରବାହ ଅତି ପ୍ରବଳ ପ୍ରତିବନ୍ଧକ ଆଗରେ ମଧ୍ୟ ହଟିଯାଏ ନା—ଆଗକୁ ମାଡ଼ି ଚାଲେ । ସେହିପରି ଅତି ବଳିଷ୍ଠ ଆତ୍ମବିଶ୍ୱାସୀ କଳାକାର ସମଗ୍ର ମାନବ ସମାଜକୁ ଆଖି ଆଗରେ ରଖି କଳା ସୃଷ୍ଟି କରେ ଏବଂ ସମାଜର କୌଣସି ପ୍ରତି-ବନ୍ଧକ ତାକୁ ଭୀତ ତ୍ରସ୍ତ କରି ପାରେନା । ସେ ହିମାଳୟର ନିର୍ଜନ ଗୁହାରେ ବସି ନିଜର କାଳ୍ପନିକ ଜଗତରେ କଳା ସୃଷ୍ଟି କରେନା —ଦୁଃଖୀ, ରଙ୍କ, କ୍ଷୁଧିତ, ପ୍ରପୀଡ଼ିତ, ରୋଗାକ୍ରାନ୍ତ, ଅନ୍ନବସ୍ତ୍ର ବଞ୍ଚିତ ଜନତାର ଠେଲାପେଲା ଭିଡ଼ରେ ମର୍ମଭେଦୀ କ୍ରନ୍ଦନ ଓ କୋଳାହଳ ମଧ୍ୟରେ ବସି ସେ କଳା ସୃଷ୍ଟି କରେ ଏବଂ ସେହି ସୃଷ୍ଟିଦ୍ୱାରା ସେମାନଙ୍କୁ ସେବା କରେ । ଏ ପ୍ରକାର ବଳିଷ୍ଠ କଳା ଓ ଆତ୍ମବିଶ୍ୱାସ ମାନସିକ ଐକ୍ୟ, ସମଷ୍ଟିଗତ ଚିନ୍ତାଧାରା ଓ ସାର୍ବ-ଜନୀନ ମୈତ୍ରୀ ପ୍ରତିଷ୍ଠାରେ ସ୍ୱତନ୍ତ୍ର ବିକାଶ ଯୋଗୁଁ ହିଁ ସମ୍ଭବ

ତେଣୁ ଆମର ବର୍ତ୍ତମାନ ସାମାଜିକ ପରିସ୍ଥିତିରେ ଏପରି କଳାକାର କେଉଁଠି ସଂଖ୍ୟାରେ ଦେଖା ଦେବା ଏକାବେଳକେ ଅସମ୍ଭବ ।

ଶ୍ରେଣୀ ବିଭକ୍ତ ସମାଜରେ ପ୍ରତିଯୋଗିତା ଖୁବ୍ ବେଶି ଦେଖାଯାଏ ଏବଂ ଅତି ମାତ୍ରାରେ ପ୍ରତିଯୋଗିତା ଯୋଗୁଁ ସମସ୍ତଙ୍କ ମନରେ ଗୋଟିଏ ଅସ୍ଥିର ଉଦ୍‌ବେଗ ଓ ଅନିଶ୍ଚିତତା ସଦାସର୍ବଦା ଲାଗିରହିଥାଏ । ତା ଫଳରେ ଧନ ସମ୍ପତ୍ତି ଲାଗି ପ୍ରବଳ ଆକାଂକ୍ଷା ଅତି ମାତ୍ରାରେ ଦେଖାଦିଏ ଏବଂ ଏ ପ୍ରକାର ମାନସିକ ବିକୃତି ସମାଜର ବହୁତ କ୍ଷତି କରେ । ସମାଜ ସଙ୍ଘର୍ଷପୂର୍ଣ୍ଣ ଥିବାରୁ କୋଟିପତି ବ୍ୟବସାୟୀ, ରାଜାମହାରାଜାମାନେ ଯେପରି ଅନିଶ୍ଚିତତାର ବଶବର୍ତ୍ତୀ ହୋଇ ଆହୁରି ବେଶି ଶୋଷଣରେ ଲାଗି ପଡ଼ନ୍ତି, ମଜଦୁର ମଧ୍ୟ ସେହିପରି ମାନସିକ ଅନିଶ୍ଚିତତା ଯୋଗୁଁ ବିଦ୍ରୋହ ଲାଗି ତତ୍ପର ହୋଇପଡ଼େ—କ୍ରମେ କ୍ରମେ ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ଉଦ୍‌ବେଗପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି ହୁଏ ଏବଂ ନମବର୍ଦ୍ଧିଷ୍ଣୁ ତିକ୍ତତା ସମ୍ପୂର୍ଣ୍ଣ ବିପ୍ଳବରେ ପରିଣତ ହୁଏ ।

ଆମ ଦେଶର ସାଧାରଣ ଜୀବନ ଚୋରବଜାର, ଲାଞ୍ଚ ଓ ନାନାପ୍ରକାର ଅସାଧୁତାରେ କଳୁଷିତ । ତାର ମୂଳରେ ଅର୍ଥନୈତିକ କାରଣମାନ ଯେତିକି ଦାୟୀ, ଅସଂଖ୍ୟ ସାମାଜିକ ଶ୍ରେଣୀବିଭାଗ ଯୋଗୁଁ ମାନସିକ ଦ୍ୱନ୍ଦ୍ୱ ଓ ତା ଫଳରେ ଆମର ଅଚେତନ ମନ ସ୍ତରରେ ଉପୁଜିଥିବା ଆତ୍ମଧିକ୍କାର, ଲଜ୍ଜା, ବିଦ୍ୱେଷ, ତିକ୍ତତା ଓ ଅନିଶ୍ଚିତତା ପ୍ରଭୃତି ମାନସିକ ବିକୃତି ମଧ୍ୟ ସେତିକି ଦାୟୀ । ତେଣୁ ବର୍ତ୍ତମାନ ଅସଜାଡ଼ତାର ମୂଳଭିତ୍ତି ବାସ୍ତବରେ ଜାଣିବାକୁ ହେଲେ ବିଭିନ୍ନ କାରଣଗୁଡ଼ିକର ବୈଜ୍ଞାନିକ ବିଶ୍ଳେଷଣ କରି ପ୍ରତ୍ୟେକ

ସାମାଜିକ ଶକ୍ତିର ବଳ, ଗତି ଓ ଦିଗ ପ୍ରଥମେ ନିର୍ଣ୍ଣୟ କରିବା ଦରକାର । ତା ହେଲେ ଆମେ ପ୍ରଥମେ ଭିନ୍ନ ଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବିଭିନ୍ନ ଶକ୍ତି ଓ ସେମାନଙ୍କର ଫଳାଫଳ ବିଷୟରେ ଉପଯୁକ୍ତ ଜ୍ଞାନ ଅର୍ଜନ କରିପାରିବୁ ଏବଂ ତା ପରେ ଯାଇ ଆମର ଇଚ୍ଛାନୁସାରେ ସେହି ଶକ୍ତିକୁ ନାନା ଉପାୟରେ ଓ ଭିନ୍ନ ଭିନ୍ନ ଦିଗରେ ଲକ୍ଷ୍ୟ ଅନୁସାରେ ଚାଳନା କରିବାକୁ ସମର୍ଥ ହୋଇ ପାରିବୁ । ଯେଉଁ ପରମାଣୁ ଓ ହାଇଡ୍ରୋଜେନ୍‌ର ଅନ୍ତର୍ନିହିତ ବିରାଟ ଶକ୍ତି ନିମିଷକେ ସହସ୍ର ସହସ୍ର ସହର, ଗ୍ରାମ ନଷ୍ଟ କରି ଦେଇ ପାରେ, ସେହି ଶକ୍ତିକୁ ସୁମାର୍ଗରେ ଚାଳିତ କରାଇ ପାରିଲେ ମନୁଷ୍ୟର ମଙ୍ଗଳପାଇଁ କି ଅସମ୍ଭବ ରକମର ଶକ୍ତି ଆମ୍ଭେମାନେ ପାଇପାରିବୁ ତାହା ସହଜରେ ଅନୁମେୟ ।

ସେହିପରି ଆମର ସାମାଜିକ କ୍ଷେତ୍ରରେ ବିପଥଗାମୀ ନାନା ପ୍ରକାରଣରେ ନଷ୍ଟହୋଇ ଯାଉଥିବା ମାନବ ଶକ୍ତିକୁ ଉପଯୁକ୍ତ ମାର୍ଗରେ ବିଜ୍ଞାନର ସମ୍ମତ ପରିଚାଳିତ କରିପାରିଲେ ଯେ ଅଦ୍ଭୁତ ପରିବର୍ତ୍ତନ ଆସିପାରିବ, ଏଥିରେ ସନ୍ଦେହ ନାହିଁ ।



# ଶ୍ରେଣୀହୀନ ସମାଜ ପ୍ରତିଷ୍ଠାର ଉପାୟ

ଆଦିମ ଯୁଗର ଶ୍ରେଣୀହୀନ ସମାଜ ଓ ଭବିଷ୍ୟତର ବିଜ୍ଞାନ ସମ୍ମତ ଏବଂ ବୈଜ୍ଞାନିକ ଚିନ୍ତାଧାରା ପ୍ରସୂତ ଶ୍ରେଣୀହୀନ ସମାଜ ଭିତରେ ଆକାଶପାତାଳ ତଫାତ୍ । ପ୍ରାଚୀନ ଶ୍ରେଣୀହୀନ ସମାଜ ଯେ ସମସ୍ତର ପରିସ୍ଥିତି ଭିତରେ ମନୁଷ୍ୟ ସମାଜକୁ ବଞ୍ଚାଇ ରଖି ପାରିଥିଲା— ସେ ସମୟର ଯୁଗୋପଯୋଗୀ ସରଳ ସଭ୍ୟତାକୁ ମଧ୍ୟ ସୃଷ୍ଟି କରିଥିଲା ଓ ଭବିଷ୍ୟତର ସାମାଜିକ ବିପ୍ଳବ ପର୍ଯ୍ୟନ୍ତ ଏହାକୁ ସ୍ୱାଧୀନ ଓ ଅପ୍ରତିହତ କରି ପାରିଥିଲା । ଏ ସଭ୍ୟତା ଏତେ ସରଳ ଏବଂ ଜୀବନ ଯାପନ ପ୍ରଣାଳୀ ଏପରି ସ୍ୱଭାବରେ ସ୍ୱାଭାବିକ ଓ ସରଳ ଥିଲା ଯେ ଏଥିରେ ବେଶି ମାନସିକ ଚିନ୍ତା ଓ ସଜ୍ଞାନ (Conscious) ସମାଜର ଚେଷ୍ଟାର ବିଶେଷ ଆବଶ୍ୟକ ନ ଥିଲା । ସାମାନ୍ୟ କେତୋଟି ମାତ୍ର ପ୍ରାକୃତିକ ବସ୍ତୁ ଉପରେ ମନୁଷ୍ୟର ସ୍ୱଭାବ ଚଳୁଥିଲା । ପ୍ରାକୃତିକ ପରିସ୍ଥିତିର ମୌଳିକ ଶକ୍ତି ସମୂହର ସହଜ ଓ ସ୍ୱାଭାବିକ ସ୍ରୋତ ମୁଖରେ ମନୁଷ୍ୟ ଯନ୍ତ୍ରବତ୍ ପରିଚାଳିତ ହେଉଥିଲା । ତାର ଉତ୍ପାଦନ କ୍ଷମତା ବହୁତ ଅନୁନ୍ନତ ଥିବା ଫଳରେ ତାର ବୁଦ୍ଧିଭାଗ୍ୟ ବୈଜ୍ଞାନିକ ଚିନ୍ତାଧାରା ମଧ୍ୟ ଅତିଶୟ କ୍ଷୀଣ ଥିଲା ଅର୍ଥାତ୍ ସେ ତାହାର ପରିସ୍ଥିତି ବିଷୟରେ ସମ୍ପୂର୍ଣ୍ଣ ଭାବେ ସଚେତନ ନ ଥିବା ଓ ସେଥିଯୋଗୁଁ ପ୍ରାକୃତିକ ଶକ୍ତି ଆଗରେ ସେ ଏତେ ଦୁର୍ବଳ ଥିଲା ।

ଅବଶ୍ୟ ଏ ପ୍ରକାର ଦୁର୍ବଳତା ଆପେକ୍ଷିକ ମାତ୍ର । ପରବର୍ତ୍ତୀ ଯୁଗର ମାନସିକ ବିକାଶ ଓ ଉତ୍ପାଦନ କ୍ଷମତାର ମାନଦଣ୍ଡରେ ଏହ ଦୁର୍ବଳ ହେଲେ ସେ ସମୟର ଅନ୍ୟାନ୍ୟ ପରିସ୍ଥିତି ଓ ଜୀବଜଗତର ମାନଦଣ୍ଡରେ ଏହା ବହୁତ ଉନ୍ନତ ଓ ଶକ୍ତିଶାଳୀ ଥିଲା ଏବଂ ସେଥିପାଇଁ

ଶାରୀରିକ ଶକ୍ତିରେ ବଳୀୟାନ୍ ମାମଥ୍ ଡାଇନୋସିଏରସ୍ ପ୍ରଭୃତି ଅତିକାୟ ଜୀବଜନ୍ତୁଙ୍କ ସମଷ୍ଟିଗତ ଚେଷ୍ଟାଫଳରେ ଜମ୍ବୁକଣ ସମାଜକୁ ସେମାନଙ୍କ ହାତରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମାଂସରେ ନିଜକୁ ପରିପୁଷ୍ଟ କରିପାରିଥିଲ । ମନୁଷ୍ୟର ଏହି ଅନ୍ତର୍ନିହିତ ଶକ୍ତିର ଚରମ ବିକାଶ ହୋଇଛି ବର୍ତ୍ତମାନର ବୈଜ୍ଞାନିକ ଯୁଗରେ କିନ୍ତୁ ଆଧୁନିକ ସମାଜର ଅତି ଉନ୍ନତ ବିଜ୍ଞାନ ଲବ୍ଧ ଶକ୍ତିର ପ୍ରୟୋଗରେ ସେହି ଆତ୍ମଘାତୀ ଦ୍ୱନ୍ଦ୍ୱ ଓ ସଙ୍କୀର୍ଣ୍ଣ ସ୍ୱାର୍ଥପରତା ରହିଛି । ତାହା ମନୁଷ୍ୟର ବହୁତ ଅନିଷ୍ଟ କରୁଛି । ସମଗ୍ର ମନୁଷ୍ୟ ସମାଜରେ ସୁଖ ସମୃଦ୍ଧି ବୃଦ୍ଧି ପାଇବାର ସମ୍ଭାବନା ଯେପରି ଅଦ୍ଭୁତ ଭାବରେ ବୃଦ୍ଧି ପାଉଛି, ସେତେକ ବ୍ୟକ୍ତି ବିଶେଷଙ୍କର ନିଜ ଅନ୍ୟାୟ ସିଦ୍ଧି ପାଇଁ ଧ୍ୱଂସ କରିବାର ବାସନା ମଧ୍ୟ ସେହି ପରିମାଣରେ ଦୁଃଖ ଯନ୍ତ୍ରଣା ସୃଷ୍ଟି କରୁଛି—ସମଷ୍ଟିଗତ ସ୍ୱାଧୀନତା ଶକ୍ତି ବ୍ୟକ୍ତିଗତ ଖାମଖିଆଲରେ ପରିଚାଳିତ ହେଉଅଛି । ତେଣୁ ମନୁଷ୍ୟର ଚରମ ବିକାଶ ଲାଗି ଯେପରି ସାମାଜିକ ପରିସ୍ଥିତିର ଆବଶ୍ୟକ ତାହା ପ୍ରତିଷ୍ଠିତ ହେଲେ ଯାଇ ବର୍ତ୍ତମାନ ସମାଜର ଆତ୍ମଘାତୀ ଦ୍ୱନ୍ଦ୍ୱ ଲୋପ ପାଇବ । ଏହା ହେଉଛି ମାନବସମାଜର ବହୁ ଆକାଂକ୍ଷିତ ଶ୍ରେଣୀହୀନ ସମାଜ ।

*

ଏ ପ୍ରକାର ଶ୍ରେଣୀହୀନ ସମାଜର ପ୍ରତିଷ୍ଠା ବିଜ୍ଞାନ ସାହାଯ୍ୟରେ କେବଳ ଏହି ଯୁଗରେହିଁ ସମ୍ଭବ ହୋଇ ପାରିବ । ସମଗ୍ର ସମାଜର ସଙ୍ଗଠିତ ଚେଷ୍ଟା, ନବୀନ ପ୍ରାକୃତିକ ଶକ୍ତିର ସୁସଂଗଠିତ ପ୍ରୟୋଗ, ସମାଜର ଶତ୍ରୁ ରୂପେ କାମ କରୁଥିବା ସବୁ ପ୍ରକାର ପ୍ରତିକ୍ରିୟାଶୀଳ ଅନୁଷ୍ଠାନ ବା ବ୍ୟକ୍ତିର ଚରମ ପରାଜୟ ଏବଂ ଏଥିପାଇଁ ସମାଜସେବୀ ନେତା, ସେବକଗଣ ବୈଜ୍ଞାନିକ

ସୁଯୋଗୋପଯୋଗୀ ଚତୁର ଓ ଅଦମ୍ୟ ଶକ୍ତି ସମ୍ପନ୍ନ, କତିପୟ ଆଦର୍ଶାନୁପ୍ରାଣିତ ପ୍ରବର୍ତ୍ତକଙ୍କ ଜନ ସମୂହର ପୃଥିବୀବ୍ୟାପୀ ସୁଗଠିତ ଚେଷ୍ଟାର ଏକାନ୍ତ ଆବଶ୍ୟକ ।

ତେବେ କି କି ଉପାୟ ଅବଲମ୍ବନ କଲେ ଏହି ଆଦର୍ଶସ୍ଥାନୀୟ ଶ୍ରେଣୀହୀନ ସମାଜର ପ୍ରତିଷ୍ଠା ସମ୍ଭବ ହୋଇପାରିବ ? ସର୍ବପ୍ରଥମେ ମନେ ରଖିବାକୁ ହେବ ଯେ ଏହି ଶ୍ରେଣୀହୀନ ସମାଜ ଆଦିମ ଯୁଗର ସମାଜ ପରି ଅପୃଥକ୍‌କୃତ ସମଷ୍ଟି ନୁହେଁ, ବରଂ ଏହା ନାନା ବିଷୟରେ ପାରଦର୍ଶୀ ଓ କାର୍ଯ୍ୟଦକ୍ଷ ନରନାରୀଙ୍କର ସଙ୍ଘାତ ଚେଷ୍ଟା ଫଳରେ ଗଢ଼ି ଉଠିଥିବା ନୂତନ ଏକ ସାମାଜିକ ଅନୁଷ୍ଠାନ । ତେଣୁ ଏହା ସମ୍ଭବ ହେବାକୁ ହେଲେ ଦେଶର ପ୍ରତ୍ୟେକ ନରନାରୀଙ୍କୁ ଉଚ୍ଚଧରଣର ଶିକ୍ଷା ଦେବା ଆବଶ୍ୟକ ଏବଂ ସେମାନଙ୍କୁ ବିଜ୍ଞାନର ଅପରିସୀମ ସମ୍ଭାବନା ଓ ମନୁଷ୍ୟର ସୃଷ୍ଟି କରିବାର ଅଖଣ୍ଡ ଅନ୍ତର୍ନିହିତ ଶକ୍ତି ବିଷୟରେ ଜାଗ୍ରତ କରାଇବା ଦରକାର । ବିଜ୍ଞାନର ଚରମ ବିକାଶ ଓ ସୁସଂଗଠିତ ପ୍ରଚେଷ୍ଟାର ଫଳରେହିଁ ଶ୍ରେଣୀ ବିଭାଗର କଠିନ ସୀମା ରେଖା ଉଠାଇ ଦେଇ ହେବ । ଏଥିପାଇଁ ଜନସାଧାରଣଙ୍କ ଦ୍ୱାରା ମନୋନୀତ ପ୍ରକୃତ ଗଣତାନ୍ତ୍ରିକ ସରକାରର ବିଧାନ ଗଠନ ଓ କଠୋର ନିୟନ୍ତ୍ରଣର ଏକାନ୍ତ ଆବଶ୍ୟକ । ତା ନ ହେଲେ ବ୍ୟକ୍ତି ସମୂହର ଉତ୍ପାଦକ ଶକ୍ତି ସମସ୍ତ ସମାଜର କଲ୍ୟାଣାର୍ଥେ ଉପଯୁକ୍ତ ଭାବରେ ନିୟୋଜିତ ହେବା ସମ୍ଭବ ନୁହେଁ । ପ୍ରତ୍ୟେକ ମନୁଷ୍ୟର ପ୍ରତ୍ୟେକ ମୁହୂର୍ତ୍ତ ଗୋଟିଏ ଅଖଣ୍ଡ ସମଷ୍ଟିଗତ ପ୍ରଯୋଜନାରେ ବ୍ୟୟିତ ହେବା ଦରକାର— ତା ହେଲେ ଯାଇ ଖୁବ୍ ଅଳ୍ପ ସମୟରେ ଅସମ୍ଭବ ରକମର

ସୁଖସମୃଦ୍ଧି ବୃଦ୍ଧି ପାଇପାରିବ ଏବଂ ମନୁଷ୍ୟଙ୍କର ଅତ୍ୟାବଶ୍ୟକ ଅଭାବ ଅନାଟନ ସବୁ ଶୀଘ୍ର ଦୂରୀଭୂତ ହୋଇ ପାରିବ । ମନୁଷ୍ୟର ପ୍ରଧାନ ଯେଉଁଗୋଟି ଆବଶ୍ୟକ ସେଗୁଡ଼ିକ ପରେ ତାର ପ୍ରକୃତ ସଭ୍ୟତାର ଆରମ୍ଭ ହେବ ଏବଂ ସେହି ସଭ୍ୟତାର ଆଦର୍ଶ ହେବ ଶ୍ରେଣୀହୀନ ସମାଜ । ଏ ପ୍ରକାର ଯୋଜନା ଓ ତାକୁ କାର୍ଯ୍ୟକାରୀ କରିବାର ଶକ୍ତି ଜାଗ୍ରତ ଜନସମାଜର ଉପଯୁକ୍ତ ପ୍ରତିନିଧି-ମାନେହିଁ ସେହି ଲୋକମାନଙ୍କର ସାହାଯ୍ୟରେ କରିପାରିବେ । କିନ୍ତୁ ଏହି ଯୋଜନା କେଉଁ କ୍ଷେତ୍ରରେ ଓ କିପରି ଭାବରେ କାର୍ଯ୍ୟକାରୀ ହେବା ବାଞ୍ଛନୀୟ, ବର୍ତ୍ତମାନ ତାର ଆଲୋଚନା କରାଯାଉ ।

ବର୍ତ୍ତମାନର କଠିନ ସୀମା ଦେଇ ବେଷ୍ଟିତ ଅସମାନ ଶ୍ରେଣୀ ବିଭାଗକୁ ପୁରାପୂରି ବଦଳାଇ ଯୁଗୋପଯୋଗୀ ବୃତ୍ତିଗତ ବ୍ୟବସାୟ ଅନୁସାରେ ଅତି ସହଜରେ ପରିବର୍ତ୍ତନୀୟ କ୍ଷୀଣ ରେଖା ଦ୍ୱାରା ସମାଜକୁ ପୁନର୍ବିଭକ୍ତ କରିବାକୁ ହେଲେ ବିଭିନ୍ନ ଶ୍ରେଣୀର କାର୍ଯ୍ୟ ହେତୁ ଓ ଜୀବନ ଯାପନ ପ୍ରଣାଳୀ ମଧ୍ୟରେ ବିଶେଷ ପାର୍ଥକ୍ୟ ରହିବା ଉଚିତ ନୁହେଁ । ପ୍ରଫେସର, ଡେପୁଟି, ଡାକ୍ତରର ପୁଅକୁ ଚାଷ କରିବାକୁ ହେଲେ ଏ ଦୁଇପ୍ରକାର ଜୀବନ ପ୍ରଣାଳୀ ମଧ୍ୟରେ ସାମାଜିକ ଓ ସାଂସ୍କୃତିକ ସାମଞ୍ଜସ୍ୟ ଆଣିବା ଦରକାର । ଡାକ୍ତର, ପ୍ରଫେସର ପ୍ରଭୃତି ଲୋକେ ଜୀବନ ଉପଭୋଗ କରିବା ଲାଗି ଯେ ପ୍ରକାର ସୁଯୋଗ ସୁବିଧା ଏବଂ ଜୀବନ ଯାପନ ପ୍ରଣାଳୀରେ ରମଣୀୟତା ପାଇବେ, ସେମାନଙ୍କର ପୁଅ ଚାଷ କରି ମଧ୍ୟ ସେହିପରି ଭାବରେ ବଞ୍ଚି ରହିବାର ସୁବିଧା ପାଇଲେ ଯାଇ ଡାକ୍ତରର ପୁଅ ଚାଷ କରିବାକୁ ଘୃଣା ବୋଧ କରିବ ନାହିଁ—ଅର୍ଥାତ୍ ଡାକ୍ତର ବା

ଉତ୍ପାଦନର ଶ୍ରେଣୀ ଭିତରୁ ଅନ୍ୟ ଶ୍ରେଣୀ ଭିତରକୁ ଯିବାକୁ ଯେପରି କୌଣସି ପ୍ରକାର ଆର୍ଥିକ, ସାମାଜିକ ବା ପ୍ରାକୃତିକ ପ୍ରତିବନ୍ଧକ ନ ରହେ,—ତା ହେଲେ କୌଣସି ରେଖା ପାର ହୋଇ ଅନ୍ୟ ଶ୍ରମିକକୁ ସହଜରେ ଗତି କରି ହେବ ଏବଂ ଦେଖୁବାକି ପରସ୍ପର ଶ୍ରେଣୀ ଭିତରେ ଅଯଥା ବାଧାର ସୃଷ୍ଟି ହେବ ନାହିଁ କିମ୍ବା ଦୂରତ୍ୱରୁ ଉଦ୍ଭବ ପ୍ରତିରୋଧକାରୀ ଓ ବହୁଭାଷିକ ଶକ୍ତି ମଧ୍ୟରେ ଅଯଥା ହଠାତ୍ ଦେଖାଦେବ ନାହିଁ । ଏକ୍ଷେତ୍ର ଭାବରେ ଯେ କୌଣସି ଶ୍ରମିକରୁ ଅନ୍ୟ ଯେ କୌଣସି ଶ୍ରମିକକୁ ଯିବାପାଇଁ ଗତି ସହଜସାଧ୍ୟ ଓ ଶୀଘ୍ର ପ୍ରତିରୋଧକାରୀ ଶକ୍ତି ରହିତ ହେବା ଦରକାର । ବାସ୍ତବ ବାଧକତା ଭାବରେ ଏମାନଙ୍କ ଦୃଷ୍ଟାନ୍ତ ସହଜସାଧ୍ୟ କିମ୍ବା ବାଞ୍ଛନୀୟ ନୁହେଁ । ପ୍ରଥମେ ଉଭୟ କାର୍ଯ୍ୟ ଶକ୍ତିର ସାମାନ୍ୟ ମାତ୍ରାଧିକ ଦରକାର ପଡ଼ିଲେ ଧୂଆଁ ଚାଷପାଣିକ ଶ୍ରମିକଙ୍କୁ ଯନ୍ତ୍ରର ସହିତ ବୈଜ୍ଞାନିକ ପ୍ରଣାଳୀରେ ବଦଳାଇ ପାରିଲେ ଏ ପ୍ରକାର ଶକ୍ତି ପ୍ରୟୋଗର ଆଉ ଆବଶ୍ୟକତା ରହିବ ନାହିଁ ।

ଡାକ୍ତର, ଅଧ୍ୟାପକର ମାନସିକ କାର୍ଯ୍ୟ ଓ ମଜୁରିଆର କ୍ଲାନ୍ତିକର କଠିନ ଶାରୀରିକ ପରିଶ୍ରମ ଭିତରେ ଯେଉଁ ଆକାଶ-ପାତାଳ ପ୍ରଭେଦ ଅଛି ତାକୁ ଯଥାସମ୍ଭବ ଲୋପ କରିବା ଦରକାର । ତଥା କିମ୍ବା ମେସିନ୍‌ଯନ୍ତ୍ରର ଅଳ୍ପ ଧୂଳ ଯନ୍ତ୍ର ବା କଳ ହାତରେ କାମ କରୁଥିବାନ୍ତୁ ତାର କାମ ବହୁ ପରିଶ୍ରମ ସାଧ୍ୟ ଓ ଝକ୍କିକର ହୋଇ ପଡ଼େ । ବୁଦ୍ଧିର ପ୍ରୟୋଗ ଓ ମାନସିକ ଚିନ୍ତାଧାରା ସହିତ ଏ ପ୍ରକାର କାମର କୌଣସି ସମ୍ପର୍କ ରହୁନାହିଁ । ବରଂ ଅନ୍ତର୍ନିହିତ ଯାନ୍ତ୍ରିକର ଜନ କଳନା ପଦ୍ଧତି ଓ ଶିକ୍ଷିତିଆ ମଜୁରିଆ ଓ ଅଧ୍ୟାପକ

ମଧ୍ୟରେ ବହୁତ ବ୍ୟବଧାନ ଦେଖା ଦେଉଛି । ଶ୍ରମୀ ମଜଦୁରଙ୍କ ପାଇଁ ବିଜ୍ଞାନ ସାହାଯ୍ୟରେ ଅତି ଶକ୍ତିଶାଳୀ କୃତ୍ରିମ ଯନ୍ତ୍ର ତିଆରି କରାଯାଇପାରେ, ଯାହା ସାହାଯ୍ୟରେ ସେ ନିଜ ବୁଦ୍ଧି ବଳରେ ଗୋଟିଏ ସ୍ଥାନରେ ବସି କେବଳ ଗୋଟିଏ ବୋତାମ ଟିପି ବା ଚକଟିଏ ମୋଡ଼ି ତାର ସମସ୍ତ କାମ ଖୁବ୍ ଅଳ୍ପ ସମୟ ଭିତରେ ଓ ସୁବିଧାରେ ଅନେକ ଭଲ ଭାବରେ କରି ଦେଇ ପାରିବ । ସେଥିଲାଗି ତାକୁ ପ୍ରଥମରୁ ଅଧ୍ୟାପକ ପରି ଅଧ୍ୟୟନ କରିବାକୁ ହେବ-ଯନ୍ତ୍ରକୁ ସୁବ୍ୟବହୃତରୂପେ ଚଳାଇବା ପାଇଁ ବୁଦ୍ଧିର ଚାଳନା ଓ ହାତର କୌଶଳ ପ୍ରୟୋଗ କରିବାକୁ ପଡ଼ିବ । ତା ଦ୍ୱାରା ଅଳ୍ପ ସମୟ ଭିତରେ ସେ କାମ ଶେଷ କରି ଦେଇ ପାରିବାରୁ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟରେ ତାର ଅବଶିଷ୍ଟାଂଶ ସମୟ ବ୍ୟୟିତ ହୋଇ ପାରିବ ଏବଂ ସେ ଅନ୍ୟାନ୍ୟଙ୍କ ପରି ସଙ୍ଗୀତ, ଅର୍ଥନୀତି, କଳା, କୃଷ୍ଟି ପ୍ରଭୃତିରେ ଅଧିକ ସମୟ ଦେଇ ସୁଖୀ ହୋଇ ପାରିବ । ତେଣୁ ଡାକ୍ତରର ପୁଅ ସ୍କୁଲ କରି ଫେରିଲାବେଳକୁ ଡାକ୍ତର ଡାକ୍ତରଖାନାରୁ ଫେରି ଆସିଥିବ । ପ୍ରତ୍ୟେକେ ସେମାନଙ୍କ ନିଜ ନିଜ କାମରେ ଗର୍ବ ଅନୁଭବ କରୁଥିବେ ଏବଂ କେହି କାହାକୁ କୁଦୃଷ୍ଟି ବା ଈର୍ଷ୍ୟା ଦୃଷ୍ଟିରୁ ହୀନ ଚକ୍ଷୁରେ ଦେଖିବାର ଅବକାଶ ନଥିବ । ଖାଲି ସେତିକି ନୁହେଁ, ନୂତନ ସାମାଜିକ ଶିକ୍ଷା ପ୍ରଣାଳୀ ମୂଳରୁ ଏପରି ଭାବରେ ଗଢ଼ା ହୋଇଥିବ ଯେ ପ୍ରତ୍ୟେକ ନାଗରିକର ସ୍ୱଚ୍ଛନ୍ଦ ଚଳଣୀୟ କାର୍ଯ୍ୟ ପାଇଁ ଶ୍ରଦ୍ଧା ଓ ସମ୍ମାନ ଦେଖାଇବା ମନୋଭାବ ଗଠିତ ହୋଇ ପାରିଥିବ । କୌଣସି ପ୍ରକାର ଶ୍ରେଣୀଗତ କିମ୍ବା ସାମାଜିକ ପ୍ରଭେଦ ନ ଥିବାରୁ ଉଚ୍ଚ ନୀଚ ମନୋଭାବ ସୃଷ୍ଟି ହେବାର ମଧ୍ୟ କୌଣସି ଆବଶ୍ୟକ ନ ଥିବ । ତେଣୁ ଲୋକର ଆନନ୍ଦ ଓ ଶକ୍ତି ଅନୁପାତରେ ସ୍ୱଚ୍ଛନ୍ଦ ଭାବରେ ନିଜର ବ୍ୟବସାୟ ବାଛିବ ବାଣ୍ଟି ନେବ

ସେ ସେଥିରେ ଖୁସୀ ହୋଇ ପାରିବ—ଖୁସୀ ହୋଇ ନ ପାରିଲେ ଅନ୍ୟ ବୃତ୍ତିକୁ ଚାଲିଯିବାରେ କୌଣସି ପ୍ରତିବନ୍ଧକ ନ ଥିବାରୁ ସେ ସହଜରେ ନିଜ ବୃତ୍ତି ବଦଳାଇ ପାରିବ । ବର୍ତ୍ତମାନ ଜଣେ ବ୍ରାହ୍ମଣକୁ ଚାଷ କରିବାକୁ ଲାଜ ଲାଗୁ ନାହିଁ କିନ୍ତୁ ମଟର ଚଳାଇବାରେ କି କାରଖାନାରେ କାମ କରିବାରେ ତାର କୌଣସି ଆପତ୍ତି ନାହିଁ । ଯଦି ଲଙ୍ଗଳ ପରିବର୍ତ୍ତେ ଟ୍ରାକ୍ଟର ବ୍ୟବହୃତ ହୁଏ, ତା ହେଲେ ତାର ଚାଷ କରିବାର କୌଣସି ଆପତ୍ତି ରହିବ ନାହିଁ । ମେହେନ୍ତର କାମ ସବୁଠୁଁ ଗର୍ହିତ—ଯେଉଁମାନେ ସେ କାମ କରନ୍ତି ସେମାନେ ଅସ୍ପୃଶ୍ୟ । ଏପରି ସ୍ଥଳରେ ସେମାନେ ମଇଳା କାମ କରନ୍ତି ଯେ ଅନ୍ୟମାନଙ୍କର ଘୃଣା ହେବା ସ୍ୱାଭାବିକ । ତେଣୁ ଜଣେ ଡେପୁଟିର ପୁଅ କେବେହେଲେ ମେହେନ୍ତର ହେବାକୁ ମନ ବଳାଇବ ନାହିଁ କିନ୍ତୁ ଯନ୍ତ୍ରସାହାଯ୍ୟରେ ଯଦି ପାଇଖାନା ସବୁ ଧୁଆ ହୋଇ ମାଟି ତଳେ ତଳେ ମଇଳାପାଣି ଯାଇ ନଦୀ ସମୁଦ୍ରରେ ପକାଯାଏ ଏବଂ ସେଥିପାଇଁ କେବଳ ଇଲେକଟ୍ରିକ୍ ସୁଇଚ୍ ଓ କଳକବ୍ଜାର ବ୍ୟବହାର କରିବା ଦରକାର ପଡ଼େ, ତା ହେଲେ ଡେପୁଟିର ପୁଅ ସେଥିରେ ଅରାଜି ହେବ ନାହିଁ । ବର୍ତ୍ତମାନ ଜଣ ଡେପୁଟିର ପୁଅ ଇଞ୍ଜିନିୟର ହେଉନାହିଁ ? ମେକାନିକ୍ସ କାମ କରୁନ ? ନା ଇଲେକଟ୍ରିକାଲ୍ ଇଞ୍ଜିନିୟର ହେବାକୁ ଅରାଜି ହେଉଛି ? ତେଣୁ ଶ୍ରେଣୀ ବିଭାଗର ପ୍ରବଳ ପ୍ରତିରୋଧକାରୀ ଗଭୀର ରେଖା ସବୁକୁ ଉଠାଇବାକୁ ହେଲେ ପ୍ରଥମେ ଶାରୀରିକ ପରିଶ୍ରମକୁ ଯନ୍ତ୍ର ସାହାଯ୍ୟରେ ଲାଘବ କରିବାକୁ ହେବ । ମନୁଷ୍ୟ ମାଂସପେଶୀ ସାହାଯ୍ୟରେ ଯେଉଁ କଠିନ ପରିଶ୍ରମ କରୁଛି, ତାକୁ କୃତ୍ରିମ ଉପାୟରେ ଜଡ଼ ପଦାର୍ଥ ସାହାଯ୍ୟରେ କରିବା ଦରକାର ।

ଆଜକାଲ ନଳକଲରୁ କଳକଳ ଶୁଦ୍ଧ ସ୍ୱଚ୍ଛ ଜଳ ସହଜ ଗାଁରେ ପିବା ସେପରି କଳ୍ପନା କେହି ସ୍ୱପ୍ନ କରି ପାରୁ ନାହାନ୍ତି, ସେହିପରି ଦିନ ଆସିବ, ଯେତେବେଳେ ଲୋକେ କଳ୍ପନା କରି ପାରିବେ ନାହିଁ ନଗର ଅଞ୍ଚଳରେ ମନୁଷ୍ୟ ହାତରେ ପାଇଖାନା ସଫା କରୁଥିଲେ—ଝିଟିରେ ମଇଳାଟୋକାଇ ଟୋକାରୁ ବୋହି ଦିନ ଦ୍ୱିପ୍ରହରରେ ମାଇଲ ମାଇଲ୍ ରାସ୍ତା ଚାଲୁଥିଲେ ଓ ରେଳଷ୍ଟେସନ ମୁମୂର୍ଷୁକୁ ସହଜ ସାହାଯ୍ୟରେ ଜଣେ ଲୋକ ଦିନକୁ ମାସେ ମାଟି ଜମି ଚାଷ କରି ସନ୍ତୁଷ୍ଟ ରହୁଥାନ୍ତି । ସେତେବେଳେ ଚାଷ, ମେଡେକାଲ, ଇଞ୍ଜିନିୟର ଓ ସ୍ୱତନ୍ତ୍ର ଟେକ୍ନିସିଆନ୍ ଭାବରେ ଅଛି ଉପାତ୍ ରହିବ ନାହିଁ । ସମସ୍ତଙ୍କୁ ସ୍ୱତନ୍ତ୍ର ଟେକ୍ନିସିଆନ୍ ହେବାକୁ ହେବ, ତେଣୁ ଶ୍ରେଣୀଗତ ପାର୍ଥକ୍ୟ ଉଠାଇବାକୁ ହେଲେ ବିଜ୍ଞାନ ସାହାଯ୍ୟରେ ଏ ପ୍ରକାର କ୍ରାନ୍ତିକାରୀ ପରିବର୍ତ୍ତନ ଦ୍ରୁତ କ୍ରମେ ସୃଷ୍ଟି କରିବାକୁ ହେବ ।

ଏହା ସମ୍ଭବ ହୋଇ ପାରିବ ଆଗରୁ ଅନେକ ପ୍ରକାରର ଗ୍ରାମ ନଗର ପାର୍ଥକ୍ୟ ମଧ୍ୟ ଲୋପ ପାଇଯିବ । ଆଜକାଲି ଆମଦେଶ ନେତାମାନଙ୍କର ଅଭିଯୋଗ ଯେ ଶିକ୍ଷିତ ଲୋକେ ମଫସଲକୁ ଯିବାକୁ ମଙ୍ଗୁ ନାହାନ୍ତି—ବରଂ ସେମାନେ ସହରରେ ବଢ଼ି ଆସିଛନ୍ତି ସେମାନେ ମନସ୍ଥିରରେ ମଫସଲକୁ ଫେରିଯିବାକୁ ଇଚ୍ଛା ନାହାନ୍ତି । ତାର କାରଣ କଣ ? ସହରରେ ଯେତେଗୁଡ଼ିଏ ସୁବିଧା ଅଛି ତାହା ମଫସଲରେ ସମ୍ଭବ ନୁହେଁ । ସହର ରାସ୍ତା ଘାଟ—ଖାଇବା ପାଇଁ ଉତ୍ତମ ପୁଷ୍ଟିକର ଖାଦ୍ୟ ମିଳେ—ସିନେମା, ଥିଏଟର ଦୋକାନ, ବଜାର, ଡାକ୍ତରଖାନା ପ୍ରଭୃତି ବହୁ ଆବଶ୍ୟକ ଜିନିଷ ଅଛି, ଯାହା କି ଜୀବନକୁ ସୁଖମୟ କରି ପାରୁଛି । କିନ୍ତୁ

ଆମ ଦେଶ ଗାଁ ମାନଙ୍କର ଅବସ୍ଥା ଦେଖ ? ବର୍ଷାଦିନେ ଗୋଟିଏ ଗାଁରୁ ଅନ୍ୟ କୁଆଡ଼େ ଯାଇ ହେବ ନାହିଁ—ଦେହ ଖରାପ ହେଲେ ଡାକ୍ତର ଦେଖିବାକୁ ନାହାନ୍ତି—ଦରକାର ଅନୁସାରେ କିଛି ଜିନି ମିଳେ ନାହିଁ—ଏପରି କି ଦୁଇ ତିନି ଖଣ୍ଡ ଗାଁ ପାଇଁ ଗୋଟିଏ ଦୋକାନ—ସମୟ କଟାଇବା ପାଇଁ କୌଣସି ପ୍ରାକୃତିକ କ ଆମୋଦର ଅନୁଷ୍ଠାନ ନାହିଁ—ସହରବାସୀଙ୍କ ଅପେକ୍ଷା ଗ୍ରାମବାସ ସାଧାରଣଙ୍କ ବହୁତ ତଳେ—ଏସବୁ କାରଣରୁ ସହର ଓ ମଫସଲ ଭିତରେ ଏତେ ବେଶି ପାର୍ଥକ୍ୟ ଓ ଶ୍ରେଣୀ ବିଭାଗ ରହିଛି । ବିଜ୍ଞାନର ପ୍ରସାର ଦ୍ୱାରା ସେତେବେଳେ ଗ୍ରାମବାସୀଙ୍କର ଆର୍ଥିକ ଅବସ୍ଥା ସୁଧୁରିବ ଓ ଯୋଜନା ଅନୁସାରେ ପ୍ରତ୍ୟେ ଗ୍ରାମରେ ସହରର ସବୁ ସୁବିଧା କରିଦେବ ସେତେବେଳେ ଅନେକ ଜନସାଧାରଣ ସହର ଛାଡ଼ି ଗ୍ରାମକୁ ଯିବାକୁ ଇଚ୍ଛା ପ୍ରକାଶ କରିବେ ।

ଶିଳ୍ପର ବହୁଳ ପ୍ରସାର ଫଳରେ କୃଷି କାର୍ଯ୍ୟରେ ନିଯୁକ୍ତ ଥିବା ଲୋକଙ୍କର ଅନୁପାତ କମିଯିବ ଏବଂ କଳକବ୍ଜାର ପ୍ରସାର ଯୋଗୁଁ ଶାରୀରିକ ପରିଶ୍ରମ କମିଯିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଶ୍ରମିକର ଉତ୍ପାଦନ ଶକ୍ତି ବହୁ ପରିମାଣରେ ବଢ଼ିଯିବ । ଶାରୀରିକ ଓ ମାନସିକ ପରିଶ୍ରମ ଭିତରେ ଯେଉଁ ଆକାଶ ପାତାଳ ପ୍ରଭେଦ ରହିଛି ତାହା ଲୋପ ପାଇବା ଉପରେ ସହର ମଫସଲ ସମ୍ପର୍କ ନିର୍ଭର କରେ । ଜଣେ ସହରରେ ରହି ବିଜୁଳି ପଙ୍ଖା ତଳେ ବସି ଖାଲି କଲମ ଚଳାଇ ଦିନକୁ ଦଶ, ପନ୍ଦର, କୋଡ଼ିଏ ଟଙ୍କା ପାଉଥିବା ସ୍ଥଳେ ଜଣେ କାର୍ତ୍ତିକ ଦିନସାରା ଅକ୍ଳାନ୍ତ ପରିଶ୍ର କରି ଦିନକୁ ଟଙ୍କାଏ ଦି ଟଙ୍କା ପାଇବାକୁ ଇଚ୍ଛା ପ୍ରକାଶ କରିବ ? ତେଣୁ ସହର ମଫସଲ ଶ୍ରେଣୀ ବିଭାଗ ମୂଳରେ ରହିଛି ଶିକ୍ଷିତ

ଅଶିକ୍ଷିତ, ବୁଦ୍ଧିଜୀବୀ, ଶ୍ରମଜୀବୀ, ଧନୀ, ଗରିବ ଶ୍ରେଣୀ ବନ୍ଧନ ଓ ମାନଧାରା ଭାଙ୍ଗର ଉତ୍ପାଦନ ପ୍ରଣାଳୀ ।

ଉପରୋକ୍ତ ଦୁଇଟି ପ୍ରଧାନ ଶ୍ରେଣୀ ବନ୍ଧନ ଉଠାଇବାକୁ ହେଲେ ସମଗ୍ର ଦେଶର ଆର୍ଥିକ ଅବସ୍ଥାର ପ୍ରକୃତ ଉନ୍ନତି ହେବା ସଙ୍ଗେ ସଙ୍ଗେ ଉତ୍ପାଦନର ବଣ୍ଟନ ପ୍ରଣାଳୀରେ ବୈପ୍ଳବାତ୍ମକ ପରିବର୍ତ୍ତନ ଆସିବା ଦରକାର । ଏହା ନ ହେଲେ ଉପରୋକ୍ତ ଶ୍ରେଣୀ ବନ୍ଧନ ମଧ୍ୟ ଉଠି ପାରିବ ନାହିଁ । ଉପଯୁକ୍ତ ବଣ୍ଟନ ପ୍ରଣାଳୀ ଦ୍ୱାରା ସମାଜରେ ଅର୍ଥନୈତିକ ସାମ୍ୟ ଆସିଗଲେ ସମାଜରୁ ବହୁ ପ୍ରକାରର ଆତ୍ମଘାତୀ ପ୍ରତିଯୋଗିତା, ଅନିଶ୍ଚିତତା, ଭୟ, ମାନସିକ ଅଶାନ୍ତି, ଦ୍ୱେଷ, ଡକାଏତି ପ୍ରଭୃତି ଅସାମାଜିକ ଆଚରଣ, ବ୍ୟକ୍ତି ବିଶେଷର ସମ୍ପତ୍ତି ସଞ୍ଚୟ ଲାଗି ଆତୁରତା, ସମ୍ପତ୍ତିଗତ ବିଦ୍ୱେଷ, ଆତ୍ମଗରିମା, ଦଳଗତ ବ୍ୟକ୍ତିଗତ ଶତ୍ରୁତା ପ୍ରଭୃତି ବହୁ ଦୋଷ ଦୂର ହୋଇ ଯିବ । ପ୍ରତ୍ୟେକର ଅର୍ଥନୈତିକ ସ୍ୱାଧୀନତା ଓ ସୁସଂଗଠିତ ଶିକ୍ଷା ପ୍ରଣାଳୀ ଫଳରେ ଶିକ୍ଷିତ ଅଶିକ୍ଷିତ, ସବର୍ଣ୍ଣ କୁଳୀନ ସମ୍ପ୍ରଦାୟର ଅସ୍ପୃଶ୍ୟ ଓ ଅନୁନ୍ନତ ବର୍ଗର କୁସଂସ୍କାର ଉପରେ ଥିବା ପ୍ରଭେଦ ମଧ୍ୟ ବହୁତ କମି ଆସିବ । ସାମାଜିକ କୃଷ୍ଟି ସାମାନ୍ୟ କେତେକ ଶିକ୍ଷିତ ଲୋକଙ୍କର ଏକଚାଟିଆ ଅଧିକାର ନ ହୋଇ ସାରା ସମାଜକୁ ମୂଳଭିତ୍ତି କରି ଗଢ଼ି ଉଠିବ । ଜନସାଧାରଣଙ୍କର ନୃତ୍ୟକଳା ପରି ଉଚ୍ଚ କୋଟୀର କଳା ସହରବାସୀ ଯେପରି ଉପଭୋଗ କରି ପାରିବେ, ପ୍ରତ୍ୟେକ ଗ୍ରାମରେ ମଧ୍ୟ ଲୋକେ ସେହିପରି ଭାବରେ ଉପଭୋଗ କରି ପାରିବେ । ସାହିତ୍ୟିକ, କଳାକାର ଓ କବିମାନେ ସମସ୍ତଙ୍କ ଦ୍ୱାରା ଆଦୃତ ହେବେ ଏବଂ ଖଣ୍ଡେ ଖଣ୍ଡେ ବହିର ପ୍ରଥମ ସଂସ୍କରଣ ହଜାର ଖଣ୍ଡରେ ଆବଦ୍ଧ ନ ରହି ଲକ୍ଷ

ଜଣ ସ୍କ୍ରୀନରେ ପ୍ରକାଶ ପାଇବ । କୋଟି କୋଟି ଟଙ୍କାର ଲକ୍ଷ ଲକ୍ଷ ସିନେମା ଫଟୋରେ ପ୍ରଦର୍ଶିତ ହେବ ଏବଂ କୋଟି କୋଟି ଗ୍ରେଡ଼ଓ ଟେଲିଭିଜନର ବ୍ୟବହାର କରାଯାଇବ । ଏପ୍ରକାର ବଳିଷ୍ଠ ସମ୍ବଳର ସଂଗଠନ ଭୂଲରେ ଅଙ୍କାବାଲଙ୍କର ସଂକୀର୍ଣ୍ଣତାର ବୃଦ୍ଧି କେତେ ଯେ ହେବ, ଏହା ସହଜରେ କଳ୍ପନା କରିହେବ ।

ଶିକ୍ଷା ତଥା ବୁଦ୍ଧିଗତ ଉଣ୍ଡର ଏପରି ସ୍ୱରୂପରେ ପ୍ରମାଣିତ ହୋଇଗଲେ,—ଜ୍ଞାନର ଆଙ୍କିକ ସମସ୍ତଙ୍କୁ ସ୍ପର୍ଶ କରିପାରିଲେ ଧର୍ମଗତ, ଜାତିଗତ, ଶ୍ରେଣୀଗତ, ଦେଶଗତ ଓ ପ୍ରାଦେଶିକତା ପ୍ରଭୃତି ବହୁ ପ୍ରକାର ସଂକୀର୍ଣ୍ଣତା, କୁଶିକ୍ଷା ବା ଅଶିକ୍ଷା ଜନିତ କୁସଂସ୍କାର ମଧ୍ୟ ବହୁତ କମିଯିବ । ବର୍ତ୍ତମାନର ଶିକ୍ଷିତ ଓ ଧର୍ମ ସମ୍ପ୍ରଦାୟର ଲୋକେ ଜନତାର ଅଜ୍ଞତା ଓ କୁସଂସ୍କାର ଯୋଗୁଁ କୁଶିକ୍ଷା ପ୍ରସ୍ତୁତ କରିବାର ସୁବିଧା ପାଇଛନ୍ତି ଓ ନିଜର ସ୍ୱାର୍ଥପାଇଁ ସେମାନଙ୍କ ମନରେ ନାନାପ୍ରକାର ସଂକୀର୍ଣ୍ଣ ଭେଦଭାବ ଉଦ୍ରେକ କରିଭ ସେମାନଙ୍କୁ ବନ୍ଧନ ଆଗରେ ରଖି ନିଜ ନାମ ହାସଲ କରୁଛନ୍ତି । କୌଣସି ବ୍ୟକ୍ତି ବିଶେଷ ଆବୁମରେ କାହିଁ ଭୋଜନ କଲାବେଳେ କେତେକ କୁକୁରମାନେ ପଦ ବିଶେଷ ଜ୍ୟୋତିକ କରନ୍ତି ଚାହେଁଲେ ଖଣ୍ଡେ ହାଡ ଫୋପାଡ଼ ଦେଲେ ଯେପରି ସେମାନଙ୍କ ଭିତରେ କଳି କେବଳ ଆରମ୍ଭ ହୋଇଯାଏ ଏବଂ ନିଜେ ମନ ଆନନ୍ଦରେ ଆହାରରେ ବ୍ୟସ୍ତ ରହେ, ସେପରି ମୁଷ୍ଟିମେୟ ଶିକ୍ଷିତ ଲୋକେ ଉର୍ଦ୍ଧ୍ୱ କୁଳୁଖୁ କୁସଂସ୍କାରଗ୍ରସ୍ତ ଅଜ୍ଞ ଜନତା ଭିତରେ ବହୁ ପ୍ରକାର କଳହର ମଞ୍ଜି ପୋତି ନିଜ ସ୍ୱାର୍ଥ ସୁବିଧା ଉଠାଇ ପାରୁଛନ୍ତି; କିନ୍ତୁ ସମସ୍ତେ ଶିକ୍ଷିତ ଓ ସଚେତ ହୋଇଗଲେ ଏହା ସମ୍ଭବ ହୋଇ ପାରିବ ନାହିଁ ।

ଫଳରେ ସମାଜ ଭିତରେ ଜାତୀୟ, ଅନ୍ତର୍ଜାତୀୟ କ୍ଷେତ୍ରରେ ମଧ୍ୟ ସଂଘର୍ଷ ବହୁପରିମାଣରେ କମିଯିବ । ପ୍ରତ୍ୟେକ ଆନ୍ତର୍ଜାତୀୟ ଯୁଦ୍ଧ ମୂଳରେ ରହିଛି ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀଙ୍କର ପୃଥିବୀର ସମ୍ପତ୍ତିକୁ ନିଜର ହାତରେ ରଖିବାର କୁଟ ଚକ୍ରାନ୍ତ । ସେମାନେ ଜନସାଧାରଣଙ୍କ ମନରେ ସ୍ୱଦେଶାନୁରାଗ ଅନ୍ୟ ଜାତି ପ୍ରତି ଘୃଣାର ବିଦ୍ୱେଷ ଓ ଶତ୍ରୁତା ଜାତି ଜାତିର ପରସ୍ପର ଭିତରେ ସଂଘର୍ଷ ସୃଷ୍ଟି କରି ନିଜେ ପଛରେ ରହି ନିଜ ସ୍ୱାର୍ଥସିଦ୍ଧିରେ ବ୍ରତକାର୍ଯ୍ୟ ହୁଅନ୍ତି । କିନ୍ତୁ ଉପରୋକ୍ତ ଉପାୟରେ ବର୍ଗହୀନ ଶ୍ରେଣୀ ସମାଜ ଗଠିତହେଲେ ଏସବୁ ବହୁପରିମାଣରେ ନଷ୍ଟପ୍ରାୟ ଲୋପ ପାଇଯିବ ।

ଅନେକ ଦେଶରେ ସ୍ତ୍ରୀ ଓ ପୁରୁଷ ଭିତରେ ଗୋଟିଏ ବିରାଟ ପ୍ରଭେଦ ରହିଛି । ତା ଫଳରେ ପୁରୁଷ ସ୍ତ୍ରୀକୁ ନିଜର ଅର୍ଦ୍ଧାଙ୍ଗିନୀ ବୋଲି କହି ଗର୍ବ କରୁଥିଲେ ମଧ୍ୟ ସ୍ତ୍ରୀ ପୁରୁଷର ସେବିକା ଛଡ଼ା ଆଉ କିଛି ନୁହେଁ । ଅଶିକ୍ଷିତ ଲୋକମାନଙ୍କ ଭିତରେ ବରଂ ଟିକିଏ ସାମ୍ୟ ଅଛି କିନ୍ତୁ ଶିକ୍ଷିତ ସମ୍ପ୍ରଦାୟ ଭିତରେ ବହୁତ ବେଶି ପାର୍ଥକ୍ୟ ପରିଲକ୍ଷିତ ହୁଏ । ସ୍ୱାମୀ ସ୍ନାତକ, ଅର୍ଥନୀତି, ବିଜ୍ଞାନ ପଣ୍ଡିତରେ ଗବେଷଣା କରି ବସିଲେ ସେଠାରେ ସ୍ତ୍ରୀ ପିଲାକାମ, ଘରକାମ କରି ରହିଥାଏ--ସ୍ୱାମୀର ଚିନ୍ତାଧାରା ସହିତ ସ୍ତ୍ରୀର କୌଣସି ସମ୍ପର୍କ ନ ଥାଏ । ଏପରି କ୍ଷେତ୍ରରେ ସ୍ତ୍ରୀ ପୁରୁଷର ଯୌନସଙ୍ଗିନୀ ଛଡ଼ା ଆଉ କୌଣସି କ୍ଷେତ୍ରରେ ତା ସହିତ ସମାନ ହୋଇ ପାରେ ନା । ଫଳରେ ଏମାନଙ୍କ ଭିତରେ ମାନସିକ ଐକ୍ୟ ଆଶା କରିବା ବିଡ଼ମ୍ବନା ମାତ୍ର । ସ୍ତ୍ରୀର ଅର୍ଥନୈତିକ ସ୍ୱାଧୀନତା ନ ଥିବାରୁ ପୁରୁଷର ଦାସୀ ହୋଇ ରହିବା ଛଡ଼ା ତାର ଅନ୍ୟ ଉପାୟ ନ ଥାଏ । ଆମ

ସମାଜର ଆଦର୍ଶ ହେଉଛି ଯେତେଦୂରଯାଏ ଝିଅ ବାହା ହୋଇନାହିଁ, ସେ ବାପର—ବାହା ହେଲା ପରେ ସ୍ୱାମୀର—ବୃଦ୍ଧା ଅବସ୍ଥାରେ ପୁତ୍ରର। ଏଥିରୁ ବୁଝାଯାଏ, ସ୍ତ୍ରୀକୁ କି ଅର୍ଥରେ ଦେଖାଯାଏ। କିନ୍ତୁ ସମାଜର ସର୍ବାଙ୍ଗୀନ ଉନ୍ନତି କରି ଶ୍ରେଣୀହୀନ ସମାଜ ଗଢିବାକୁ ହେଲେ ସ୍ତ୍ରୀକୁ ପୁରୁଷ ପରି ସବୁ କ୍ଷେତ୍ରରେ ସମାନ ଅଧିକାର ମିଳିବା ଦରକାର। ତାହାହେଲେ ଯାଇ ସେ ପୁରୁଷ ପରି ଉତ୍ପାଦନ କରିପାରିବ ଏବଂ ସମାଜର ସମୂହ ସୁଖ-ସମୃଦ୍ଧି ବୃଦ୍ଧି ପାଇପାରିବ। ତା ନ ହେଲେ ଏ ପ୍ରକାର ଅସାମ୍ୟ ପାଇଁ ସମାଜର ଜୀବନର ଦେଶର ଅନ୍ୟ କ୍ଷେତ୍ରରେ ପରିପୁଷ୍ଟ ହେବ ଏବଂ ସାରା ସମାଜରେ ବୋଝ ହୋଇ ରହିବ। ତା ଛଡ଼ା ଉଭୟ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଉପଯୁକ୍ତ ମାନସିକ ଐକ୍ୟ ଆସିପାରିବ ନାହିଁ—ନାନାପ୍ରକାର ବୈଷମ୍ୟଗତ ଦୁର୍ବଳତା ଓ ଅସାମାଜିକ କାର୍ଯ୍ୟାବଳୀ ସାମାଜିକ ଜୀବନକୁ ଦୁର୍ବଳ କରିଦେବ।

ଶ୍ରେଣୀହୀନ ସମାଜରେ ଶ୍ରେଣୀ ରହିବ ନାହିଁ ଏବଂ ସମସ୍ତଙ୍କ ଭିତରେ ଗୁଣାନୁଯାୟୀ ସାମ୍ୟବାଦ ପ୍ରତିଷ୍ଠିତ। କିନ୍ତୁ ତା ଅର୍ଥ ନୁହେଁ ଯେ ଜଣେ ମଠର ଚାକର ଓ ଜଣେ ବିଶିଷ୍ଟ ବୈଜ୍ଞାନିକ, ବା ଜଣେ ସୁଦକ୍ଷ ଗାୟକ ଓ ଜଣେ ସାଧାରଣ ଶ୍ରମିକ ମଧ୍ୟରେ କିଛି ପାର୍ଥକ୍ୟ ରହିବ ନାହିଁ। ଆଜିକାଲି ଭାରତର ଜଣେ ସିନେମା ଅଭିନେତ୍ରୀ ଗୋଟିଏ ଚଳଚ୍ଚିତ୍ର ପାଇଁ ଲକ୍ଷ ଲକ୍ଷ ଟଙ୍କା ପାଉଛି, ଜଣେ ମଠର ଓ ଇତର ବା ଜଣେ ଶିକ୍ଷକ ସାରା ଜୀବନରେ ଦଶ କୋଡ଼ିଏ ହଜାର ଟଙ୍କା ରୋଜଗାର କରି ପାରୁନାହିଁ—ଏପରି ତଫାତ୍ ନିଶ୍ଚୟ ରହିବ ନାହିଁ; ତେବେ ଦୁହିଙ୍କ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ରହିଲେ ସୁଦ୍ଧା ଗାୟକ

ବା ବୈଜ୍ଞାନିକ ବେଶି ଜନପ୍ରିୟ ହୋଇ ପାରିବେ ଏବଂ ଏଥିପାଇଁ ବହୁତ ସମ୍ମାନ ପାଇବେ । ସେ ସମାଜର ଯେତେ ବେଶି ଉପକାର କରି ପାରିବ ସେ ସେତେ ବେଶି ଅଦୃତ ହେବ । ଏଥିରେ ବିଦ୍ୱେଷ ଓ ବ୍ୟକ୍ତିଗତ କଳହ ରହିବା ସମ୍ଭବ ନୁହେଁ ; ଏହା ବାମ ଭିତ୍ତି ଜଣେ କୋଟିପତି ହୋଇ ବସିଥିବାବେଳେ ଆଉ ଜଣେ ଖଟି ଖାଉଥିଲେ ବ୍ୟକ୍ତିରେ ଆକ୍ରୋଶ ଓ ମାନସିକ କଳହ ବଢ଼େ କିନ୍ତୁ ଏ ପ୍ରକାର କାର୍ଯ୍ୟରେ ତ ସବୁ ମନୁଷ୍ୟ ସମାଜର ରକ୍ଷା ସେମାନଙ୍କ ପ୍ରତି ସ୍ୱତଃ ପ୍ରକାଶ ପାଇବ । ବରଂ ଏମାନଙ୍କର କାର୍ଯ୍ୟ ଶ୍ରେଣୀଗତ ପ୍ରତିଯୋଗ ଶୂନ୍ୟ ସମାଜରେ ବହୁଲୋକଙ୍କୁ ସେହିପରି କାମରେ ଅନୁପ୍ରାଣିତ କରିବ । ସମସ୍ତଙ୍କର ଆଗ୍ରହ ହେବ ନୂତନ ଉଦ୍ଭାବନ ବା ଅନ୍ୟ ଉପାୟରେ ସମାଜସେବା କରି ଜନପ୍ରିୟ ହେବା ପାଇଁ । ମନୁଷ୍ୟର କାର୍ଯ୍ୟ ଓ ସମ୍ମାନ ଅର୍ଥ ଦ୍ୱାରା କଳୁଷିତ ନ ହୋଇ ନୂତନ ସାମାଜିକ ମାନଦଣ୍ଡ ଦ୍ୱାରା ନିୟନ୍ତ୍ରିତ ହେବ । ଶ୍ରେଣୀହୀନ ସମାଜର ଚତୁର୍ଦ୍ଦିଗରେ ଏହିଭଳି ବେଶି ପ୍ରତିଯୋଗିତା ସେ ପ୍ରତିଯୋଗିତା ସେମାନେ ମଧ୍ୟ ଜଣମାନଙ୍କ ପରି ଅଜ୍ଞାତ ଅଶ୍ରୁତ ଭାବରେ ମୃତ୍ୟୁ ମରିଯାନ୍ତି ।

ଶେଷରେ ଏତିକି କୁହାଯାଇପାରେ ସେ ଜନତାର ହିତକାମୀ ପ୍ରକୃତ ଗଣତାନ୍ତ୍ରିକ ସରକାରଙ୍କ ଜନସମାଜର ସହଯୋଗ ସମ୍ପନ୍ନ ଯୋଜନା ଓ ଜନଶକ୍ତିର ଉପଯୁକ୍ତ ସଂଗଠନ ଦ୍ୱାରା ଏପରି ପରିସ୍ଥିତି ସୃଷ୍ଟି କରି ଦେଇ ପାରିବ, ଯା ଫଳରେ ଅତି ସହଜରେ ଓ ବିନା ବାଧାବାଧକତାରେ ବହୁ ଆକାଂକ୍ଷିତ ଶ୍ରେଣୀହୀନ ସମାଜ ପ୍ରତିଷ୍ଠିତ ହୋଇପାରିବ । ତେଣୁ, ଶ୍ରେଣୀହୀନ ସମାଜ ବକ୍ତୃତା ଓ ବାହ୍ୟ ବଳ ପ୍ରୟୋଗ ଦ୍ୱାରା କେବେ ସମ୍ଭବ ହୋଇ ପାରେ ନା;

କେବଳ ଶାସକଗୋଷ୍ଠୀଙ୍କ ପରିସ୍ଥିତି ବଦଳାଇବା ଦ୍ୱାରା ଏହା ସମ୍ଭବ ହୋଇପାରିବ । ଜଡ଼ ଜଗତର ପଦାର୍ଥ—ବିଜ୍ଞାନ କ୍ଷେତ୍ରରେ ଯେପରି କେତେକ ଶକ୍ତିର ପରିବର୍ତ୍ତନ କରି ସମଗ୍ର ପରିସ୍ଥିତିର ଅନ୍ୟ ପ୍ରକାର ପରିସ୍ଥିତି ସୃଷ୍ଟି କରିହୁଏ, ସାମାଜିକ କ୍ଷେତ୍ରରେ ମଧ୍ୟ ତଦ୍ରୂପ ଅବସ୍ଥାର ପରିବର୍ତ୍ତନ କରି ସେମାନେ ନିଜ ଇଚ୍ଛାନୁରୂପ ନୂତନ ପରିସ୍ଥିତି ସୃଷ୍ଟି କରିହେବ । ତଫାତ୍ ଏତିକି ଯେ ଜଡ଼ଜଗତରେ ବାହ୍ୟଶକ୍ତି ଦ୍ୱାରା ଏହା କରିହେବ, କିନ୍ତୁ ସାମାଜିକ କ୍ଷେତ୍ରରେ ଏପରି ପରିବର୍ତ୍ତନ ଆଣିବାକୁ ହେଲେ ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ଓ ସଜାଗ ଚେଷ୍ଟା ଫଳରେ ହିଁ ସମ୍ଭବ ହେବ ।

ଏହି ଚେଷ୍ଟା ଓ ବାସ୍ତବ ପରିବର୍ତ୍ତନ କ୍ରମେ କ୍ରମେ ମନୁଷ୍ୟର ମାନସିକ କ୍ରିୟା ପ୍ରତିକ୍ରିୟାକୁ ମଧ୍ୟ ବଦଳାଇ ଦେବ । କାରଣ ବାସ୍ତବ ସାମାଜିକ ପରିବର୍ତ୍ତନ ଓ ମାନସିକ ପ୍ରତିକ୍ରିୟା ଭିତରେ ଘନିଷ୍ଠ କାର୍ଯ୍ୟ କାରଣ ସମ୍ପର୍କ ଲାଗିରହିଛି ।

---

## ବିବର୍ତ୍ତନ

ଧର୍ମଶାସ୍ତ୍ର ଓ ପୁରାଣରୁ ଆମେ ଜାଣୁ ଯେ ଏହି ମୃତ୍ତିକା ତଥା ଜୀବଜନ୍ତୁ, ମନୁଷ୍ୟ ପ୍ରଭୃତି ପ୍ରାଣୀ ଜଗତକୁ ଭଗବାନ ସୃଷ୍ଟି କରିଥନ୍ତି। ସୃଷ୍ଟିର ତାତ୍ପର୍ଯ୍ୟ ହେଉଛି ଯେ ଏସବୁର ଆବିର୍ଭାବ ହେବା ପୂର୍ବରୁ ତାର କୌଣସି ପ୍ରକାର ଅସ୍ତିତ୍ୱ ନ ଥିଲା ଓ ଭଗବାନଙ୍କର ଇଚ୍ଛାନୁସାରେ ସମୟର ଅବଚ୍ଛିନ୍ନ ସ୍ରୋତର କୌଣସି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଏସବୁର ଉତ୍ପତ୍ତି। ଭଗବାନ ଅନ୍ଧକାର ଭିତରେ ହଠାତ୍ ଚାହିଁଲେ ଆଲୋକ ଏବଂ ତତ୍‌କ୍ଷଣାତ୍ ସାରା ଜଗତ ଆଲୋକରେ ଉଦ୍ଭାସିତ ହୋଇ ଉଠିଲା। ଭଗବାନ ଚାହିଁଲେ ଜୀବଜଗତର ସୃଷ୍ଟି; ତା'ପରେ ସୃଷ୍ଟି ହେଲା ଜୀବଜନ୍ତୁ, ମନୁଷ୍ୟ ପ୍ରଭୃତି ସମସ୍ତ ପ୍ରକାର ପ୍ରାଣୀଜଗତ। ଥରେ ଏପରି ଭାବରେ ସୃଷ୍ଟି ହେଲା ପରେ ଈଶ୍ୱରଙ୍କ ନିୟମ ଅନୁସାରେ ସେସବୁ ଚାଲିଲେ ନିଜ ନିଜ ଗନ୍ତବ୍ୟ ପଥରେ।

ଉପରୋକ୍ତ ମତବାଦ ଆଜିକାଲି ଆଉ ଗ୍ରହଣୀୟ ନୁହେଁ। ଏହା ପ୍ରାଚୀନ ଯୁଗର ଋଷିମାନଙ୍କର କଳ୍ପନାପ୍ରସୂତ ମତବାଦ ମାତ୍ର। ସେତେବେଳକାର ଅନ୍ଧକାର ପରିବେଷ୍ଟିତ ଜ୍ଞାନର ସ୍ତର ଦୃଷ୍ଟିରୁ ଏପ୍ରକାର କଳ୍ପନାପ୍ରସୂତ ବର୍ଣ୍ଣନା ଛଡ଼ା ବାସ୍ତବ ଗବେଷଣା ପ୍ରସୂତ ଓ ସୁପ୍ରତିଷ୍ଠିତ ବୈଜ୍ଞାନିକ ତଥ୍ୟାତଥ୍ୟ ସମ୍ଭବ ନ ଥିଲା। କେତେକ କ୍ଷେତ୍ରରେ ଦାର୍ଶନିକମାନେ ଅନେକ ଉପାଦେୟ ଓ ବହୁ ଚିନ୍ତା ପୂର୍ଣ୍ଣ ତଥ୍ୟ ଉପସ୍ଥାପିତ କରିପାରିଲେ ସୁଦ୍ଧା ଓ ସେସବୁ ଆଜି ଯାଏଁ ଗ୍ରହଣୀୟ ହୋଇ ଆସୁଥିଲେ ସୁଦ୍ଧା ଆଧୁନିକ ଯୁଗର ବୈଜ୍ଞାନିକ ଗବେଷଣା ପ୍ରଣାଳୀ ଓ ନୂତନ ଯନ୍ତ୍ର ସମ ସାହାଯ୍ୟରେ ଯେଉଁଥି ଭାବରେ ଜ୍ଞାନର ପରିସର ଅତି ଦ୍ରୁତଗତିରେ ପରିବ୍ୟାପ୍ତ ହେବାରେ ଲାଗିଛି ଏବଂ ପ୍ରକୃତିର ଅତି ଅଦ୍ଭୁତ ଓ ଜଟିଳ

ରହସ୍ୟ ସବୁ ନିୟମ ଜାଣି ଉଦ୍‌ଘାଟିତ ହେବାରେ ଲାଗିଛି, ତାହା ସେତେବେଳେ ଗୌରବ ବୋଧ ଉପୁଜୁନଥିଲା । ମନୁଷ୍ୟର ପାରିପାର୍ଶ୍ୱିକ ଅବସ୍ଥା ଓ ପ୍ରାକୃତିକ ଶକ୍ତି ସମୂହକୁ ନିଜ ଇଚ୍ଛା ଅନୁସାରେ ନିୟନ୍ତ୍ରଣ କରିବାରେ ଦକ୍ଷତା ବଢ଼ିବା ସାଙ୍ଗେ ସାଙ୍ଗେ କୃତ୍ରିମ ଉପଗ୍ରହ ତିଆରି କରି ନିଜର ଅତି ସୀମାବଦ୍ଧ ଇନ୍ଦ୍ରିୟ ଗଣର କାର୍ଯ୍ୟକାରୀ ଶକ୍ତିକୁ ବହୁ ପରିମାଣରେ ବୃଦ୍ଧି କରିବାରେ ସମର୍ଥ ହୋଇପାରିଥିବାରୁ ତା ପକ୍ଷରେ ଏ ପ୍ରକାର ଜ୍ଞାନ ସମ୍ଭବ ହୋଇ ପାରୁଛି । ତେଣୁ ବିଜ୍ଞାନର ରହସ୍ୟ ଭେଦକାରୀ ସୂକ୍ଷ୍ମ ଜ୍ଞାନ ଚକ୍ଷୁରେ ଆମ୍ଭେମାନେ ସୃଷ୍ଟି ଓ ଜୀବଜଗତର ଉତ୍ପତ୍ତି, ମାନବିକ ଜୀବନର କ୍ରମବିକାଶ, ମନୁଷ୍ୟର ସଂସ୍କୃତି ଓ ସଭ୍ୟତାର କ୍ରମୋନ୍ନତି, ଧର୍ମମତ, ରାଜନୀତି ଓ ଲୋକାଚାର ସମାଜବ୍ୟବସ୍ଥା ପ୍ରଭୃତି ବହୁ ଜଟିଳ ସମସ୍ୟାକୁ ନୂତନ ଦୃଷ୍ଟିକୋଣରୁ ସମାଧାନ କରିବା ପାଇଁ ଚେଷ୍ଟା କରୁଛୁ ।

ବୈଜ୍ଞାନିକଙ୍କ ମତରେ ମନୁଷ୍ୟ ଓ ସମସ୍ତ ଜୀବଜଗତ,— ଆମର ଏ ପୃଥିବୀ ତଥା ସାରା ବିଶ୍ୱବ୍ରହ୍ମାଣ୍ଡ—ବର୍ତ୍ତମାନ ଯେ ଅବସ୍ଥାରେ ଅଛି ତାହା ଏପରି ନ ଥିଲା । କଳ୍ପନାତୀତ ଅତୀତ ଯୁଗରେ ସମସ୍ତ ଭୌତିକ ଜୈବିକ ତଥା ମାନସିକ ଅବସ୍ଥିତି ଅତି ସରଳ ଅବସ୍ଥାରୁ ଜଟିଳ, ଜଟିଳତର ଓ ଜଟିଳତମ ଅବସ୍ଥା ଓ ଆକାର ଭିତର ଦେଇ ବର୍ତ୍ତମାନ ଅବସ୍ଥାରେ ଆସି ପହଞ୍ଚିଛି । ପ୍ରତ୍ୟେକ ବସ୍ତୁର ପରିବର୍ତ୍ତନ ପ୍ରତିମୁହୂର୍ତ୍ତରେ ଲାଗି ରହିଛି ଏବଂ ଏପ୍ରକାର କ୍ରମ ପରିବର୍ତ୍ତନ ଲକ୍ଷ କୋଟି ବର୍ଷଧରି ଅସମ୍ପୂର୍ଣ୍ଣ ଫେନାୟିତ ସ୍ରୋତ ବକ୍ଷରେ ସଞ୍ଚରିତ ହୋଇଆସୁଅଛି ଏବଂ ଏହି ସକଳ କମ୍ପା ଜଟିଳ ଅବସ୍ଥା ଯେଉଁ ମୁହୂର୍ତ୍ତରେ ଯେପରି ଆକାରରେ ଥାଉନା କାହିଁକି ସେହି ଏକ ଆଦିମ ଜଡ଼ ବସ୍ତୁର ରୂପାନ୍ତର ମାତ୍ର । ଦେଶ ଓ କାଳ ଭେଦ ମୌଳିକ ବସ୍ତୁରେ ଭିନ୍ନ ରୂପ ପ୍ରକାଶ ପାଇଲେ ସୁଦ୍ଧା ତାର ମୂଳ ଉପାଦାନ ହେଉଛି ସେହି ଏକ ଆଦିମ ଅଚେତନ ଜଡ଼ବସ୍ତୁ ।

ଜନ ଥିଲା ଯେତେବେଳେ ଆମର ସୂର୍ଯ୍ୟ ଏହି ଅବସ୍ଥାରେ ନଥିଲା, ତା ପରେ କ୍ରମେ ସୂର୍ଯ୍ୟର ଉଦ୍ଦିଷ୍ଟ ରୂପ ପ୍ରକାଶ ପାଇଲା—ତା ପରେ କୌଣସି କାରଣରୁ ହେଉ ( ଏ ବିଷୟରେ ବହୁ ମତବାଦ ରହିଛି ) ଆମର ପୃଥିବୀ ଓ ଅନ୍ୟାନ୍ୟ ଗ୍ରହସବୁ ସୂର୍ଯ୍ୟ ଦେହରୁ ବିଚ୍ଛିନ୍ନ ହୋଇ ବସ୍ତୁର ମାଧ୍ୟାକର୍ଷଣ ଶକ୍ତି ବଳରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବୁଲିବାକୁ ଆରମ୍ଭ କଲେ । ପୃଥିବୀର ପ୍ରକୃତ ସୂର୍ଯ୍ୟର ଅତି ଉତ୍ତପ୍ତ ତରଳ ପଦାର୍ଥର ଅଂଶ ବିଶେଷ ହୋଇଥିବାରୁ ଲକ୍ଷ ଲକ୍ଷ ବର୍ଷ ଲାଗିଗଲା ଥଣ୍ଡା ହୋଇ ବାସଯୋଗ୍ୟ ହେବାପାଇଁ—ବର୍ତ୍ତମାନ ସୁଦ୍ଧା ଆଉ କେତେକ ଗ୍ରହ ସୂର୍ଯ୍ୟଠାରୁ ଦୂରତ୍ୱ ଓ ନିଜର ଆକାର ଯୋଗୁଁ ସେହିପରି ଉତ୍ତପ୍ତ ଅବସ୍ଥାରେ ରହିଛି—ଆଉ କେତେକ ଗ୍ରହ ଓ ଉପଗ୍ରହ ଖୁବ୍ ଛୋଟ ଥିବାରୁ ଓ କେତେକ ସୂର୍ଯ୍ୟଠାରୁ ବହୁତ ଦୂରରେ ରହିଥିବାରୁ ଅନେକ ଆଗରୁ ଥଣ୍ଡା ହୋଇ ସାରିଲେଣି । ଆମ ପୃଥିବୀ ମଧ୍ୟ କ୍ରମେ ଅଧିକ ଶୀତଳ ହୋଇଯାଉଛି ଏବଂ ଅନେକ କୋଟି ବର୍ଷ ପରେ ଏପରି ସମୟ ଆସିବ ଯେତେବେଳେ ଏ ଏହା ମଧ୍ୟ ଚନ୍ଦ୍ର ପରି ତୁଷାରବୃତ ହୋଇଯିବ ଏବଂ ସେତେବେଳେ କୌଣସି ଜୀବଜନ୍ତୁଙ୍କର ଉପସ୍ଥିତି ଆଉ ସମ୍ଭବ ହୋଇପାରିବ ନାହିଁ ।

•

ଆମ ପୃଥିବୀର ଇତିହାସରୁ ଜଣାଯାଏ ଯେ ପ୍ରଥମେ ପ୍ରଥମେ ଜଳୀୟ ଅଂଶ କମ୍ ଥିବାରୁ କୌଣସି ପ୍ରକାର ଜୀବଜନ୍ତୁଙ୍କର ଆବିର୍ଭାବ ସମ୍ଭବପର ହୋଇନଥିଲା । କାଳକ୍ରମେ ବର୍ଷା ହୋଇ ପୃଥିବୀ ଶୀତଳ ହେଲାପରେ ଓ ନଦୀ ନାଳ ସମୁଦ୍ର ଦେଖାଦେଲା ପରେ ପାଣିରେ ଜଡ଼ ବସ୍ତୁର ମୂଳ ଉପାଦାନ ସବୁର ଆଣବିକ ଓ ପରମାଣବିକ ସମ୍ମିଳନରେ ଆଦ୍ୟ ଜୀବନ ଅତି ସରଳ ଭାବରେ

ଉଦ୍ଭାସିତ କରିଲା । ଏହି ଜୀବକୋଷର ଉତ୍ପତ୍ତି ପୃଥିବୀ ଇତିହାସର କେଉଁ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଦେଖିବାକୁ ମିଳିବ ତା ଉତ୍ତର ଦେବା ସହଜ ନୁହେଁ । କିନ୍ତୁ ସରଳ ଜୀବକୋଷକୁ କୃତ୍ରିମ ଉପାୟରେ ଗବେଷଣାଗାରରେ ଆଜିଯାଏଁ ପ୍ରସ୍ତୁତ କରିନ ପାରିଲେ ସୁଦ୍ଧା ଏହାର ରସାୟନିକ ଉପାଦାନ ଓ କ୍ରିୟା ପ୍ରକ୍ରିୟା ବିଷୟରେ ବହୁ କେତୋଟି ରହସ୍ୟମାନ ଜାଣିହେଲା ଅଛି ବୋଲି ମନେ ହୁଏ । କୋଷକେନ୍ଦ୍ରସ୍ଥ ଅଣୁବଳ ଓ ପରମାଣବିକ ଉପାଦାନର ରସାୟନିକ ପରିବର୍ତ୍ତନରେ କେତୋଟି ନୂତନ ପ୍ରକାର ଶକ୍ତିର ସୃଷ୍ଟି ହୋଇଥିଲା ଏବଂ ଏହି ଶକ୍ତି ବିଶେଷର କେତେଗୁଡ଼ିଏ ନୂତନ ଧରଣର କ୍ରିୟା ପ୍ରକ୍ରିୟା ଦେଖାଦେଲା, ଯାହାକି ପୂର୍ବଅନୁଭୂତ ଜୀବନ ଉପାଦାନମାନଙ୍କଠାରେ ନାହିଁ । ନିଜର ଅସ୍ତିତ୍ୱ ବଜାୟ ରଖିବାପାଇଁ ଏହା ବାହ୍ୟ ଜଗତରୁ ଉପାଦାନ ସଂଗ୍ରହ କରି ନିଜନିଜରେ ପରିଣତ କରିପାରେ ଏବଂ ନିଜ ଶରୀରକୁ ଭାଗ ଭାଗ କରି କାଳକ୍ରମେ ତାର ସଂଖ୍ୟା ବହୁ ପରିମାଣରେ ବଢ଼ାଇ ଦେଇପାରେ । ଏହିପରି କ୍ରମେ ଏହି ଅତି ସରଳ ଆଦିମ ଜୀବକୋଷ ନାନାପ୍ରକାର ଅବସ୍ଥାନୁଯାୟୀ ନିଜକୁ ଗଢ଼ିବାରେ ଲାଗିଲା ଏବଂ ଏକକୋଷ ବିଶିଷ୍ଟ ଜୀବ ବହୁକୋଷ ବିଶିଷ୍ଟ ଜଟିଳ ଜୀବରେ ପରିଣତ ହେଲା । ଫଳରେ ଲକ୍ଷାଧିକ କୋଟି କୋଟି ନୂତନ ଧରଣର ଜୀବଜନ୍ତୁଙ୍କର ଆବିର୍ଭାବରେ ପୃଥ୍ୱୀ ଭରିଗଲା । ଜଳସ୍ଥଳ ଏପରି ଭାବରେ ନାନା ଜୀବରେ ପରିପୂର୍ଣ୍ଣ ହୋଇ ଉଠିଲା ଏବଂ କ୍ରମେ ଏଥି ମଧ୍ୟରୁ କେତେକ ପ୍ରକୃତିର ଆହ୍ୱାନରେ ବାହାରି ପଡ଼ିଲେ ଓ ପ୍ରକୃତିର ପାରିପାର୍ଶ୍ୱିକ ଅବସ୍ଥାର ସହିତ ନିଜକୁ ପ୍ରୟୋଜନାନୁରୂପ ପରିବର୍ତ୍ତିତ କରି ପ୍ରଥମେ ପ୍ରଥମେ ଉଭୟଚର ଏବଂ କାଳକ୍ରମେ ସ୍ଥଳଚର ଜୀବ ପୃଥିବୀ ପୃଷ୍ଠରେ ବିଜୟୀ

ସେମାନଙ୍କଠେ ଅବତରଣ କଲେ । ଭିନ୍ନ ଭୌଗୋଳିକ ପରିସ୍ଥିତି ଓ ଜଳବାୟୁ ସହିତ ଖାପଖୁଆଇ ନାନା ପ୍ରକାର ବୃକ୍ଷଲତା ଓ ଜୀବଜନ୍ତୁ ଜଟିଳରୁ ଜଟିଳତର ରୂପରେ ଦେଖାଦେଲେ । ଭିନ୍ନ ସମୟର ଭିନ୍ନ ଭିନ୍ନ ପ୍ରାଣୀର କଙ୍କାଳ ଓ ଅସ୍ଥିପଞ୍ଜର ଜୀବାଶ୍ମ ( Fossil ) ମୃତ୍ତିକାର ସ୍ତରେ ସ୍ତରେ ଦେଖିବାକୁ ମିଳେ । ଆଧୁନିକ ବୈଜ୍ଞାନିକ ଗବେଷଣା ଓ ସୂକ୍ଷ୍ମଯନ୍ତ୍ର ସାହାଯ୍ୟରେ ଏସବୁର ଗଠନ ସମୟ, ଧାରାବାହିକ ଇତିହାସ ଓ ପାରସ୍ପରିକ ସମ୍ପର୍କ ପ୍ରଭୃତି ବିଷୟରେ ବହୁ ନୂତନ ତଥ୍ୟ ଦିନେ ଦିନେ ପ୍ରକାଶ ପାଉଛି । ତେଣୁ ପୃଥିବୀର ବହୁ ପୁରାତନ ଇତିବୃତ୍ତି ମୃତ୍ତିକାର ପ୍ରତ୍ୟେକ ସ୍ତରରେ ଲେଖା ହୋଇ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କାଳର ଅଗ୍ରଗାମୀ ସ୍ରୋତସ୍ୱତୀର ଫେନାୟିତ ବକ୍ଷର ରକ୍ଷିତ ମୁହୂର୍ତ୍ତ ବୁଦ୍ବୁଦରେ କେତେ କୋଟି ଜୀବର ଯେ ଉଦ୍ଭବ ଓ ବିଲୟ ହୋଇଛି ତାର କଳ୍ପନା ସମ୍ଭବ ନୁହେଁ । ଉକ୍ତ ଏ ସବୁ ବୃକ୍ଷଲତା ଜୀବଜନ୍ତୁଙ୍କ ଭିତରେ ଗୋଟିଏ ଧାରାବାହିକ କ୍ରମୋନ୍ନତି ପରିଲକ୍ଷିତ ହୁଏ । ଅତି ସରଳ ଜଳଚର ଜୀବ ପରେ ପରେ ମେରୁଦଣ୍ଡ ବିଶିଷ୍ଟ ଜୀବଜନ୍ତୁ ଜଳ ଓ ସ୍ଥଳରେ ଦେଖାଗଲେ । କେତେକ ମାଛ, ସରୀସୃପ, ପକ୍ଷୀ ପ୍ରଭୃତି ଜାତୀୟ ଜୀବ ଏହି ଶ୍ରେଣୀଭୁକ୍ତ । ତା ପରେ ଦେଖାଗଲେ ସ୍ତନ୍ୟପାୟୀ ଜୀବଗଣ ଏବଂ ଏହି ଶ୍ରେଣୀର ପ୍ରାଣୀଙ୍କ ଭିତରୁ ଗରିଲ ଶିମ୍ପାଞ୍ଜି, ଗିବନ୍ ଓରାଙ୍ଗ୍ ପ୍ରଭୃତି ଜୀବଙ୍କୁ ସର୍ବଶ୍ରେଷ୍ଠ ମନୁଷ୍ୟର ସମ୍ଭାବ୍ୟ ପୂର୍ବପୁରୁଷ । ଏମାନେ ଅନ୍ୟାନ୍ୟ ସ୍ତନ୍ୟପାୟୀ ଜନ୍ତୁଙ୍କଠାରୁ ବୁଦ୍ଧିମାନ୍ । ଏମାନେ ଫଳମୂଳାହାରୀ, ଗଛ କୋଟରେ କିମ୍ବା ଗୁମ୍ଫାରେ ବାସ କରନ୍ତି ।

ଏମାନଙ୍କର ମସ୍ତିଷ୍କ ଆକାରରେ ବଡ଼ ଏବଂ ଏମାନେ ଝୁଙ୍କ୍ ସିଧା ଭାବରେ ଗଛ ଉପରେ ବିଚରଣ କରିପାରନ୍ତି । ଏମାନଙ୍କ ସହିତ ମଣିଷର ବହୁତ ସାମଞ୍ଜସ୍ୟ ଅଛି । ମନୁଷ୍ୟର ପ୍ରାୟ ସବୁପ୍ରକାରର ମାଂସପେଶୀ, ଅସ୍ଥି, ଶିରା ଗ୍ରନ୍ଥି ପ୍ରଭୃତି ଏମାନଙ୍କଠାରେ ଦେଖିବାକୁ ମିଳେ । ମନୁଷ୍ୟର ଆକାର ଏମାନଙ୍କଠାରୁ ଅଲଗା—ମନୁଷ୍ୟ ପଛ ଗୋଡ଼ରେ ଠିଆ ହୋଇ ଆଗଗୋଡ଼କୁ ହାତରୂପେ ବ୍ୟବହାର କରିପାରେ ଏବଂ ଏହାର ମେରୁଦଣ୍ଡ ସିଧା ଭାବରେ ମୁଣ୍ଡକୁ ଟେକି ରଖିଛି; ବେକ ଲମ୍ବା ତେଣୁ ଇଚ୍ଛାନୁସାରେ ଏପାଖ ସେପାଖ ବୁଲାଇପାରେ ଇତ୍ୟାଦି । କିନ୍ତୁ ସବୁଠୁଁ ବଡ଼ ତଫାତ୍ ହେଉଛି ମନୁଷ୍ୟ ମସ୍ତିଷ୍କର ଆକାର ଓ ଆପେକ୍ଷିକ ଅନୁପାତ । ଏହା ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ ବହୁତ ବଡ଼ ଓ ସୂକ୍ଷ୍ମତର । ହାତ ଦୁଇଟି ମୁକ୍ତ ଓ ବୁଦ୍ଧି ବେଶି ଥିବାରୁ ଅନ୍ୟାନ୍ୟ ଜନ୍ତୁଙ୍କଠାରୁ ମନୁଷ୍ୟ ବହୁଗୁଣରେ ଶକ୍ତିଶାଳୀ ହୋଇପାରିଛି । ଅବଶ୍ୟ ଗିବନ୍, ଶିମ୍ପାଞ୍ଜି ପ୍ରଭୃତିଙ୍କଠାରୁ ଆମପରି ମନୁଷ୍ୟର ଉଦ୍ଭବ ହଠାତ୍ ହୋଇନାହିଁ । ଏ ଦୁଇ ଶ୍ରେଣୀ ଭିତରେ ଅନ୍ତତଃ ଅନେକ ପ୍ରକାର ପ୍ରାଣୀ ଦେଖାଯାଉଥିଲେ—ସେହିମାନେ ନ ମର୍କଟ ଜାତୀୟ ନୁହନ୍ତି ନ ପୂରାପୂରି ଆଧୁନିକ ମନୁଷ୍ୟପରି ନୁହନ୍ତି । ଏପରି ଅର୍ଦ୍ଧ ମନୁଷ୍ୟ ଜାତୀୟ ପ୍ରାଣୀର କଙ୍କାଳ ଆଫ୍ରିକା, ପେକିଂ, ଜାଭା, ଜର୍ମାନୀ ପ୍ରଭୃତି ଦେଶରୁ ମିଳୁଛି ଏବଂ ଏସବୁ ପ୍ରକାର କଙ୍କାଳ ଓ ଜୀବାଶ୍ମ ପାଇବା ପାଇଁ ଆହୁରି ଚେଷ୍ଟା ଚାଲିଛି—ବଣ ମଣିଷର ପ୍ରଥମ ଆବିର୍ଭାବ ଏସିଆ, ଦକ୍ଷିଣ-ପୂର୍ବ ଏସିଆ ଓ ଆଫ୍ରିକାରେ ପ୍ରାୟ ଛଅ ଲକ୍ଷରୁ ପାଞ୍ଚଲକ୍ଷ ବର୍ଷ ତଳେ ହୋଇଥିଲା ବୋଲି କେତେକ ନୃତତ୍ତ୍ୱବିତ୍ ବିଶ୍ୱାସ କରନ୍ତି । ଅନ୍ୟ କେତେକଙ୍କ ମତରେ

ଏହା ଦଶ ଲକ୍ଷବର୍ଷ ପୂର୍ବେ ହୋଇଥିବ ଏବଂ ଆଜି ବାର୍ଦ୍ଧି ଏ ପ୍ରକାର ଆଦ୍ୟ ମଣିଷର ପ୍ରଥମ ଜନ୍ମଦାତା । ତେବେ କେତେ ଲକ୍ଷ ବର୍ଷ ପୂର୍ବେ ହେଉନା କାହିଁକି ମନୁଷ୍ୟ ଯେ କ୍ରମ ବିବର୍ତ୍ତନର ଶେଷ ସୋପାନ ଦେଇ ଏହି ଅବସ୍ଥାରେ ଆସି ପହଞ୍ଚିଛି ଏଥିରେ କାହାରି ସନ୍ଦେହ ନାହିଁ । କେହି ଜଣେ ହେଲେ ବୈଜ୍ଞାନିକ ସନ୍ଦେହ କରନ୍ତି ନାହିଁ ଯେ, ଏହି ପୃଥିବୀ ଉପରେ ଲକ୍ଷ ଲକ୍ଷ ବର୍ଷ ବିତି ଯାଇଛି ଯେତେବେଳେ କୌଣସି ଜୀବଜନ୍ତୁଙ୍କର ସତ୍ତା ସୃଷ୍ଟି ନ ଥିଲା ଏବଂ ଆହୁରି କେତେ ଲକ୍ଷ ବର୍ଷ ବିତିଯାଇଛି ଯେତେବେଳେ କେତେକ ନିମ୍ନଶ୍ରେଣୀର ଜୀବଜନ୍ତୁ କିମ୍ବା ଅଣ୍ଡଜାତ ସରୀସୃପ ଜାତୀୟ ପର୍ଯ୍ୟନ୍ତ ଏହି ପୃଥିବୀ ପୃଷ୍ଠରେ ବିଚରଣ କରୁଥିଲେ ଏବଂ ସେତେବେଳେ ମନୁଷ୍ୟର ଅସ୍ତିତ୍ୱ ସୃଷ୍ଟି ନଥିଲା; ତାପରେ ମାତ୍ର ୩୫ ଲକ୍ଷ ବର୍ଷ ତଳେ ମନୁଷ୍ୟ ଜାତୀୟ ବଣ ମଣିଷ କ୍ରମେ କ୍ରମେ ଏଠାରେ ଦେଖା ଯାଇଥିଲେ । ତେଣୁ କ୍ରମ ବିବର୍ତ୍ତନ ମତବାଦ ଯେ ଏକାବେଳକେ ଠିକ୍ ଏଥିରେ କାହାର ଦ୍ୱିଧା ସନ୍ଦେହ ନାହିଁ । ବିବର୍ତ୍ତନର ରୂପ, ପ୍ରଣାଳୀ, ଏହାର କାର୍ଯ୍ୟାତ୍ମକ ଓ ନାନା ଦାର୍ଶନିକ ତଥ୍ୟ ବିଷୟରେ ଭିନ୍ନ ଭିନ୍ନ ମତାମତ ଦେଖାଯାଏ ଏବଂ ଜୀବନର ଆରମ୍ଭକାଳ ଓ ଧାରାବାହିକ କ୍ରମୋନ୍ନତି ବିଷୟରେ ବୈଜ୍ଞାନିକମାନଙ୍କ ଭିତରେ ବିଶେଷ ମତଦ୍ୱୈଧ ନାହିଁ ।

ମନୁଷ୍ୟ ବଣମଣିଷ ଅବସ୍ଥାରେହିଁ ଲକ୍ଷାଧିକ ବର୍ଷ ରହିଥିବାର ଜଣାଯାଏ—ସେତେବେଳେ ତାର ଜୀବନଯାପନ ପ୍ରଣାଳୀ ଓ ସଭ୍ୟତା ବଡ଼ ସରଳ ଥିଲା । ଏମାନେ ଗୁମ୍ଫାରେ ରହୁଥିଲେ କିମ୍ବା ଗଛଡାଳ ଛିଣ୍ଡି ଘର କରୁଥିଲେ । ପଥରର

ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଶିକାର କରି ବଞ୍ଚୁଥିଲେ—ଫଳମୂଳ ଆହରଣ ଏମାନଙ୍କର ଆଉ ଗୋଟିଏ ପ୍ରଧାନ ଜୀବିକା ଥିଲା । ଏହି ଆଦିମ ସଭ୍ୟତାକୁ ପ୍ରାଚୀନ ପ୍ରସ୍ତର ଯୁଗ ସଭ୍ୟତା ବୋଲି ଅଭିହିତ କରାଯାଇଛି । ତାପରେ ଦେଖାଦେଲା ନୂତନ ପ୍ରସ୍ତର ଯୁଗ । ଏ ଯୁଗରେ ମନୁଷ୍ୟମାନେ ଆହୁରି ବେଶି ରକମର ପଥରର ସୂକ୍ଷ୍ମ ଅସ୍ତ୍ରଶସ୍ତ୍ର ବ୍ୟବହାର ଓ ବନ୍ୟ ଜନ୍ତୁଙ୍କୁ ପୋଷା ମନାଇ ନିଜ କାମରେ ବ୍ୟବହାର କରିବାକୁ ଶିଖିଲେ । ଏହି ଯୁଗରେ ସାରା ପୃଥିବୀ ପୃଷ୍ଠରେ ଏମାନଙ୍କର ସଂଖ୍ୟା ବହୁତ କମ୍ ଥିବାର ଜଣାଯାଏ । କୋଡ଼ିଏ ହଜାର ବର୍ଷ ପୂର୍ବ ପର୍ଯ୍ୟନ୍ତ ଏହି ନୂତନ ପ୍ରସ୍ତର ଯୁଗ ଦେଖାଯାଏ—ଅର୍ଥାତ୍ ୩୨ ଲକ୍ଷ ବର୍ଷକାଳ ମଣିଷ କେବଳ ଆଦିମ ପ୍ରାଚୀନ ପ୍ରସ୍ତର ଯୁଗରେ ରହିଥିଲା ଏବଂ ତାର ଜୀବନ ଯାପନ ପ୍ରଣାଳୀ ବହୁତ ସରଳ ଓ ସଭ୍ୟତା ଅତ୍ୟନ୍ତ ଅପରିପକ୍ୱ ଥିଲା । କ୍ରମେ କ୍ରମେ ମନୁଷ୍ୟ ତାମ୍ର ଓ ପିତ୍ତଳର ଅସ୍ତ୍ରଶସ୍ତ୍ର ବ୍ୟବହାର କରି ଶିଖିଲା ଉନ୍ନତ ପ୍ରକାରର ମାଟି ଓ ତାମ୍ର ପିତ୍ତଳର ପାତ୍ର ତିଆରି କରିପାରିଲା ଏବଂ କ୍ରମେ କୃଷି କରି ଶିଖିଲା—ବଳଦ, ମେଣ୍ଢା, ଘୋଡ଼ା ପ୍ରଭୃତି ଗୃହପାଳିତ ଜନ୍ତୁଙ୍କ ସାହାଯ୍ୟରେ ନିଜର କାମ ହାସଲ କଲା—ଉନ୍ନତ ଘରଆଦି କରି ପାରିଲା—ଫଳରେ ଲୋକଙ୍କର ସୁଖ ସମୃଦ୍ଧି ବଢ଼ି ଉଠିଲା; ସହର ଦେଖାଦେଲା ଓ ତା ସାଙ୍ଗେ ସାଙ୍ଗେ ରାଜ୍ୟ ବିସ୍ତାର କରିବାର ପ୍ରବୃତ୍ତି ମଧ୍ୟ ଦେଖାଦେଲା । ଏହି ପ୍ରାଚୀନ ଯୁଗର ସୁମେରିୟାନ୍ ଇଜିପ୍ସିୟାନ ପ୍ରଭୃତି ସଭ୍ୟତାର ମୂଳଦୁଆ ପଡ଼ିଲା—ତାପରେ କେତେ ପ୍ରକାରର ସଭ୍ୟତା କେତେ ବଡ଼ ବଡ଼ ବିରାଟ ସାମ୍ରାଜ୍ୟ ଇତିହାସର ଲିଖିତ ପୃଷ୍ଠାରୁ ଦେଖିବାକୁ ମିଳେ—ତାପରେ ଲୌହଯୁଗ ଓ ଯନ୍ତ୍ରଯୁଗର ସୃଷ୍ଟିପାତ ହେଲା

ଏବଂ ପ୍ରକୃତିର ଉଦ୍ଧତ ଶକ୍ତିକୁ ମନୁଷ୍ୟ ନିଜର କରାୟତ୍ତ କରି ଦିନକୁଦିନ ବଳୀୟାନ୍ ହୋଇ ଉଠିଲେ ଏବଂ ସଭ୍ୟତାର ବହୁ ଉଚ୍ଚତରେ ଆସି ବସିପାରିଲେ ।

ଆଧୁନିକ ଯୁଗର ସଭ୍ୟତା ଗତ ୫ଲକ୍ଷ ବର୍ଷର ମନୁଷ୍ୟ ସଭ୍ୟତାର କ୍ରମବିକାଶର ଫଳ । କିନ୍ତୁ ମନୁଷ୍ୟ ଗତ ଲକ୍ଷ ଲକ୍ଷ ବର୍ଷ ଧରି ଯେଉଁ ଉନ୍ନତି କରିପାରି ନ ଥିଲା, ଦୁଇ ଶହ ବର୍ଷ ଭିତରେ ତାଠୁଁ ବହୁଗୁଣରେ ଆଗେଇ ଯାଇଛି ଏବଂ ଏହାଠୁ ଆହୁରି ଶୀଘ୍ର ଗତିରେ ଆଗାମୀ କେତେ ବର୍ଷ ଭିତରେ ମନୁଷ୍ୟ ଆଗକୁ ଅଗ୍ରସର ହେବାର ସମ୍ଭାବନା ରହିଛି । ତାର କାରଣ ହେଉଛି ଏହି କେତେ ଶହ ବର୍ଷ ଭିତରେ ମନୁଷ୍ୟ ବିଜ୍ଞାନ ବଳରେ ନିଜର କ୍ଷମତା ଓ ପ୍ରାକୃତିକ ଶକ୍ତିର ସନ୍ଧାନ ଯଥେଷ୍ଟ ଭାବରେ ପାଇଛି ତଦ୍ୱାରା ତାର ଚେତନାଶକ୍ତି ମଧ୍ୟ ବହୁ ପରିମାଣରେ ବୃଦ୍ଧି ପାଇଛି । ପୂର୍ବେ ମନୁଷ୍ୟ ତାର ଚାରିପାଖର ଅବସ୍ଥାର ପ୍ରଭାବରୁ ନିଜକୁ ପୂରାପୂରି ମୁକ୍ତ କରିପାରୁ ନଥିଲା ବରଂ ଭିନ୍ନ ଅବସ୍ଥା ଅନୁସାରେହିଁ ତାକୁ ଚଳିବାକୁ ପଡ଼ୁଥିଲା । କିନ୍ତୁ ବର୍ତ୍ତମାନ ଏହିସବୁ ଅବସ୍ଥାକୁ ନିଜ ଇଚ୍ଛାନୁସାରେ ବଦଳାଇ ପାରିବାର କ୍ଷମତା ତାର ଆସିଛି ଏବଂ ଏ ବିଷୟରେ ସେ ଯଥେଷ୍ଟ ସଚେତ ହୋଇ ଉଠିଛି । ତେଣୁ ମନୁଷ୍ୟ ବର୍ତ୍ତମାନ ଜୀବଜଗତର ବିବର୍ତ୍ତନ ଅନେକ ପରିମାଣରେ ନିଜ ଇଚ୍ଛାନୁସାରେ ନିୟନ୍ତ୍ରିତ କରିପାରେ । ମନୁଷ୍ୟ ଇଚ୍ଛାକଲେ ତାର ସଂଖ୍ୟା ବଢ଼ାଇ ଦେଇପାରେ କିମ୍ବା କମାଇ ଦେଇପାରେ ଏବଂ ନାନା ଉପାୟରେ ପ୍ରାକୃତିକ କ୍ରମବିକାଶକୁ କ୍ଷିପ୍ରତର କରି ଦେଇପାରେ କିମ୍ବା ତାର ଧାରା ବହୁ ପରିମାଣରେ ନୂତନ ସ୍ତରରେ ପରିଚାଳିତ କରିପାରେ । ଏହା ମାନବ ସଭ୍ୟତାର ସର୍ବଶ୍ରେଷ୍ଠ କୃତିତ୍ୱ କହିଲେ ଚଳେ ।

ବହୁ ଆଗରୁ ଏହି ବିବର୍ତ୍ତନ 'ମତବାଦର ରଚନା ଅନେକ ଦାର୍ଶନିକ ଓ ବୈଜ୍ଞାନିକ ଦେଇଥିଲେ ସୁଦ୍ଧା ବ୍ରିଟିଶ ବୈଜ୍ଞାନିକ ଡାରଉଇନ୍ ଏହାକୁ ଉପଯୁକ୍ତ ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କରି ସୁସଙ୍ଗତ ଓ ସୁଶୃଙ୍ଖଳିତ ପଦ୍ଧତି ଆକାରରେ ଉପସ୍ଥାପିତ କରିଥିଲେ । ସେହି ଦିନଠାରୁ ଏ ବିଷୟରେ ବହୁ ଗବେଷଣା ହୋଇସାରିଛି—ଅନେକ ମୂଳ ତଥ୍ୟ ବଦଳିଯାଇଛି—କେତେ ପ୍ରକାର ନୂତନ ତଥ୍ୟ ପ୍ରକାଶ ପାଇଛି— କିନ୍ତୁ ଡାରଉଇନଙ୍କ ତଥ୍ୟ ଜୀବ ଜଗତରେ ଯେ କୋଟିଏ ବର୍ଷର ଉର୍ଦ୍ଧ୍ୱ ବଞ୍ଚିଛି ଏଥିରେ ସନ୍ଦେହ ନାହିଁ । ପ୍ରଥମେ ପ୍ରଥମେ ଅନେକ ଧର୍ମପ୍ରାଣ ଲୋକେ ଏହାକୁ ବିଶ୍ୱାସ କଲେ ନାହିଁ । ଆଜଯାଏଁ ସୁଦ୍ଧା ଇଟାଲୀର ଖ୍ରୀଷ୍ଟିୟାନ ଧର୍ମଯାଜକ ଗୋଟି ଏହାକୁ ନାସ୍ତିକମାନଙ୍କର ମତବାଦ ବୋଲି କହନ୍ତି । କାରଣ ଭଗବାନଙ୍କର ସୃଷ୍ଟି ପ୍ରକ୍ରିୟାକୁ ଯେପରି ଭାବରେ ବ୍ୟାଖ୍ୟା କଲେ ତାଙ୍କର ପ୍ରଭୁତ୍ୱ କମି ଯାଉଥିଲା ଏବଂ ମଣିଷକୁ ସର୍ବଶ୍ରେଷ୍ଠ ଆସନ ମିଳୁ ନଥିଲା, ଏହାଦ୍ୱାରା ସେଥିରେ ବାଧା ପଡ଼ୁଥିଲା । ମନୁଷ୍ୟ ଭଗବାନଙ୍କ ପ୍ରଥମ ଓ ଶ୍ରେଷ୍ଠ ସୃଷ୍ଟି ନ ହୋଇ ସାମାନ୍ୟ କେତେ ଲକ୍ଷ ବର୍ଷ ହେଲା ଏହାର ବିବର୍ତ୍ତନର ଗୋଟିଏ କ୍ଷୁଦ୍ରପ୍ରାଣୀ ମାତ୍ର ଅଧିକାର କରିଥିଲା । ଏଣୁ ସେମାନେ ଏହାକୁ ପସନ୍ଦ କରନ୍ତି ନାହିଁ । କିନ୍ତୁ ପ୍ରକୃତ ଘଟଣାବଳୀ ହେତୁ ସତ୍ୟ କେତେକଙ୍କ ଖାମଖିଆଲି ମନୋଭାବ ଉପରେ ନିର୍ଭର କରେ ନାହିଁ । ବିବର୍ତ୍ତନ ବାଦର ସତ୍ୟତା ବର୍ତ୍ତମାନ ଏପରି ଭାବରେ ପ୍ରତିଷ୍ଠିତ ହୋଇଛି ଯେ, ଏହାକୁ ଅବିଶ୍ୱାସ କରିବା ଅର୍ଥ ଆଖି ବନ୍ଦକରି ପ୍ରକୃତ ଘଟଣାକୁ ଉପେକ୍ଷା କରିବା ।

ଏହି ବିବର୍ତ୍ତନ ମତବାଦ କେବଳ ଜୀବନର କ୍ରମବିକାଶ ଦେଖାଇବାରେ ଶେଷ ହୁଏନାହିଁ । ଏହାର ପ୍ରଭାବ ବହୁଦୂର ବ୍ୟାପୀ

ପୃଥିବୀର ସବୁ ରକମର ଅବସ୍ଥାକୁ—ଯଥା ଭୌତିକ, ଜୈବିକ, ମାନସିକ, ସାମାଜିକ ସାଂସ୍କୃତିକ ଓ ଅର୍ଥନୈତିକ ଓ ରାଜନୈତିକ ସଂସ୍ଥା ଓ ନୈତିକ ପଦ୍ଧତିସବୁକୁ—ଏପରି ବିଶ୍ଳେଷଣ କରି ତାର କ୍ରମୋନ୍ନତିକୁ ଦର୍ଶାଇବାର ପ୍ରକୃଷ୍ଟ ବୈଜ୍ଞାନିକ ପ୍ରଣାଳୀ ବୋଲି ବିବେଚିତ ହେଉଛି । ତେଣୁ ଏହା ଆମର ଜ୍ଞାନର ପରିସର ବୃଦ୍ଧି କରିଦେବା ସାଙ୍ଗେ ସାଙ୍ଗେ ସମସ୍ତ ବିଷୟର ଧାରାବାହିକ ଇତିହାସ ଆମମାନଙ୍କ ଆଗରେ ରଖିଦେଇ ପାରୁଛି । ଯେଉଁମାନେ ଏସବୁ ବିବର୍ତ୍ତନରେ ବିଶ୍ୱାସ କରନ୍ତି ନାହିଁ ସେମାନେ ନାନା ପ୍ରକାର ରହସ୍ୟମୟ ଘଟଣା ମାଧ୍ୟମରେ ଇତିହାସକୁ ବୁଝିବାକୁ ଚେଷ୍ଟା କରନ୍ତି । ସେମାନେ ଭଗବାନଙ୍କର ଅବତାର ପ୍ରତିଭାଶାଳୀ ଲୋକଙ୍କ ଠାରେ ଆରୋପ କରି ସେହି ଐତିହାସିକ ଘଟଣାବଳୀକୁ କାର୍ଯ୍ୟକାରଣ ସମ୍ବନ୍ଧରେ ଆବଦ୍ଧ କରି ଧାରାବାହିକ କ୍ରମବିକାଶ ଦୃଷ୍ଟିରୁ ବ୍ୟାଖ୍ୟା । କଥାନ୍ତର ତାକୁ ବ୍ୟକ୍ତିବିଶେଷର ଖାମଖିଆଲର କାର୍ଯ୍ୟ ହିସାବରେ ଉପସ୍ଥାପିତ କରନ୍ତି । ଫଳରେ ଧର୍ମର ଅପଲାପ ହେବା ସାଙ୍ଗେ ସାଙ୍ଗେ ମନୁଷ୍ୟ ମନରେ ନାନା କୁସଂସ୍କାର ସୃଷ୍ଟି ହୁଏ । କ୍ରମବିବର୍ତ୍ତନବାଦ ଉପରେ ଦୃଷ୍ଟି ରଖି ଉପସ୍ଥିତ ବୈଜ୍ଞାନିକ ପ୍ରଣାଳୀରେ ଇତିହାସକୁ ଦେଖିବାରେ [illegible] ବସ୍ତୁ ସତ୍ୟ ନିର୍ଦ୍ଧାରିତ ହୋଇଛି ଏବଂ ଚିନ୍ତାଶୀଳ ମନୁଷ୍ୟର ମନ ଏସବୁ ଯୁକ୍ତିଯୁକ୍ତ ବୋଲି ମଧ୍ୟ ଗ୍ରହଣ କରିଛି । ନାନା ପ୍ରକାର ସାମାଜିକ ଓ ମନସ୍ତାତ୍ତ୍ୱିକ ରହସ୍ୟ ଉଦ୍‌ଘାଟନ ଲାଗି ଏହା ପ୍ରଧାନ ଅସ୍ତ୍ରରୂପେ ବ୍ୟବହୃତ ହେଉଛି । ଯେ କୌଣସି ସମସ୍ୟାର ବିଶ୍ଳେଷଣ କରିବାକୁ ହେଲେ ପ୍ରଥମେ ପ୍ରଶ୍ନ ହେଉଛି ଯେ, ଏହାର ଉତ୍ପତ୍ତି କିପରି ଓ କେଉଁ ସମୟରେ ହୋଇଥିଲା—ଏ ପ୍ରଣାଳୀରେ ଏହାର କ୍ରମବିକାଶ ବୁଝି ଆସିଛୁ

ଏବଂ ଏହାର ପରିଣାମ କେଉଁଠି ? ତା ଅର୍ଥ ଆମେ କ୍ରମ ବିବର୍ତ୍ତନ ପନ୍ଥାରେ ଏହାର ଉତ୍ତର ଦେବାକୁ ଚେଷ୍ଟା କରୁଛୁ । ଉଦାହରଣ ସ୍ୱରୂପ ମନୁଷ୍ୟର ମାନସିକ କ୍ରିୟା ପ୍ରକ୍ରିୟା ବିଷୟରେ ଜାଣିବାକୁ ହେଲେ କ୍ରମ ବିକାଶର ସୂତ୍ର ଧରି ଜୀବଜଗତର ଆଦିମ ଏକକୋଷବିଶିଷ୍ଟ ଜୀବାଣୁ ପର୍ଯ୍ୟନ୍ତ ଆମମାନଙ୍କର ଫେରିବା ଉଚିତ ଓ ସେହିଠାରୁ ଏ ସମଗ୍ର ଜୀବଜଗତର ପାରସ୍ପରିକ ସମ୍ପର୍କ ବିଷୟରେ ଜ୍ଞାନ ଅର୍ଜନ କଲେ ଯାଇ ଆଧୁନିକ ମନୁଷ୍ୟର ମନର କ୍ରିୟା ପ୍ରକ୍ରିୟା ବୁଝିହେବ । ସେହିପରି ଆଜିକାଲିକାର ସାମାଜିକ ଓ ଅର୍ଥନୈତିକ ପରିସ୍ଥିତିକୁ ଭଲଭାବରେ ବୁଝିବାକୁ ହେଲେ ସେହି ଉପାୟରେ ତାର ଧାରାବାହିକ ଇତିହାସ ଖୋଜି ବାହାର କରିବାକୁ ହେବ । ଏହି ଦୃଷ୍ଟିରୁ ବିବର୍ତ୍ତନବାଦ ବିଜ୍ଞାନରାଜ୍ୟରେ ଗୋଟିଏ ବିପ୍ଳବାତ୍ମକ ଉଦ୍ଭାବନ—ଏହାର ଗୋଟିଏ ସୂତ୍ର ମନୁଷ୍ୟ ବାହାର କରିପାରିଛି ଯାହା କି ଅଳ୍ପକ୍ଷଣରେ ବହୁ ରହସ୍ୟ ଭଣ୍ଡାର ଉଦ୍‌ଘାଟିତ କରିଦେଇ ପାରିବ । ଏଥିଲାଗି ଏହାର ମହତ୍ତ୍ୱ ଏତେ ବେଶି ବଢ଼ି ଯାଇଛି—ଡାରଉଇନ୍‌ଙ୍କର ସମସ୍ତ ଉଦାହରଣ ମିଥ୍ୟା ବୋଲି ପ୍ରମାଣିତ ହେଲେ ବି ତାଙ୍କର ଏହି ବୈଜ୍ଞାନିକ ପଦ୍ଧତି ଯେ ଅମର ହୋଇ ରହିବ ଏଥିରେ ଟିକେ ମାତ୍ର ସନ୍ଦେହ ନାହିଁ ।



# ଆମର ସାମର୍ଥ୍ୟ ଓ ଦୁର୍ବଳତା

ଆମେମାନେ ଜାଣୁ, ମନୁଷ୍ୟ ଜୀବନର ଇତିହାସ ଆରମ୍ଭ ହେବା ପୂର୍ବରୁ ପୃଥିବୀ ବକ୍ଷରେ ଅନେକ ପ୍ରକାରର ଅତି-କାୟ ଜୀବଜନ୍ତୁ ଓ ସରୀସୃପ ଜାତୀୟ ପ୍ରାଣୀମାନେ ବିଚରଣ କରୁ-ଥିଲେ । ସେମାନଙ୍କର ଶାରୀରିକ ଶକ୍ତି, ଅବୟବାବଳୀ ଓ ଆକାର ପ୍ରକାର ତୁଳନାରେ ପାଞ୍ଚଫୁଟ ସାଢ଼େ ଚାରିଇଞ୍ଚ କ୍ଷୁଦ୍ରକାୟ ମନୁଷ୍ୟ, ହାତୀ ପାଖରେ ମୂଷାପରି ଦୁର୍ବଳ ଓ ନଗଣ୍ୟ ଦେଖାଯିବ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ବିଶାଳକାୟ ଜୀବଜନ୍ତୁ ସବୁ ପ୍ରାଚୈତିହାସିକ କଥା ହୋଇ ରହିଥିବା ସ୍ଥଳେ ମଣିଷ ଇତିହାସ ଗଢ଼ିବାରେ ଲାଗିଛି । ଏହା ସମ୍ଭବ ହୋଇପାରିଛି ମଣିଷର ଅପେକ୍ଷାକୃତ ଉନ୍ନତ ମସ୍ତିଷ୍କ ଓ ଉନ୍ନତମାନର ବୁଦ୍ଧି ବଳରେ । ଏହି କାରଣ ଯୋଗୁଁ ଯେତେବେଳେ ହଠାତ୍ କୌଣସି ପ୍ରାକୃତିକ ବିପ୍ଳବ ଘଟେ—ଅତି ଥଣ୍ଡା ପବନ ସହିତ ବରଫ ମାଡ଼ିଆସେ କିମ୍ବା ଅନ୍ୟାନ୍ୟ ଜଳବାୟୁଜନିତ ପରିବର୍ତ୍ତନ ଦେଖାଦିଏ— ସେତେବେଳେ ଅଧିକାଂଶ ଜୀବଜନ୍ତୁ ପ୍ରାଣତ୍ୟାଗ କରନ୍ତି, କିନ୍ତୁ ମଣିଷ ବୁଦ୍ଧିବଳରେ ନିଜକୁ ବଞ୍ଚାଇବାକୁ ଚେଷ୍ଟାକରେ । ଏହି ଚେଷ୍ଟା ମୂଳରେ ଯେଉଁ ଅନ୍ତର୍ନିହିତ ମାନସିକ ଶକ୍ତି ରହିଛି ତାହା ପଶୁ ସମାଜରେ ନାହିଁ । ପଶୁମାନେ ସେମାନଙ୍କର ନିତ୍ୟ ନୈମିତ୍ତିକ ସ୍ୱାଭାଚଳନରେ ବାଧାବିଘ୍ନ ଆସି ପଡ଼ିଲେ ସେ ସବୁକୁ ଏଡ଼ାଇ ପାରନ୍ତି ନାହିଁ । ଅର୍ଥାତ୍ ନିଜକୁ ଉଚ୍ଛିନ୍ନ ପରିବର୍ତ୍ତିତ ଅବସ୍ଥାରେ ଖାପ ଖୁଆଇ ଚଳାଇବାର ମାନସିକ ଶକ୍ତି ସେମାନଙ୍କର ନାହିଁ । ଦୈନନ୍ଦିନ ଜୀବନର ଗୁଜୁରାଣ ମେଣ୍ଟାଇବା ପାଇଁ ସେମାନେ ପରସ୍ପର ସ୍ଖଳିତ ହୋଇଥାନ୍ତି ଏବଂ ସେଗୁଡ଼ିକ ଠିକ ଗୋଟିଏ ପ୍ରକାର

ଭାବରେ ସମ୍ପାଦନ କରନ୍ତି । ଯଥା, ରେଶମ କୀଟ ପ୍ରଭୃତି ପୋକ ସବୁ କେତେଗୁଡ଼ିଏ କଳ କବ୍‌ଜା ଓ ସ୍ପ୍ରିଂ ସାହାଯ୍ୟରେ ଠିକ୍ ଠିକ୍ ଭାବରେ କାମ କଲ୍ ପରି ଏମାନେ କେତୋଟି ଜନ୍ମଗତ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଯନ୍ତ୍ରବତ୍ କାମ କରିଯାନ୍ତି । ଏମାନେ ମନୁଷ୍ୟପରି ଭାବ ଶକ୍ତି ଅତୀତ ଅନୁଭୂତି ମନେ ରଖି ଭବିଷ୍ୟତ ପ୍ରତି ଦୃଷ୍ଟି ଦେଇ କୌଣସି ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ କାମ କରି ପାରନ୍ତି ନାହିଁ । କିନ୍ତୁ ଯେଉଁ କେତୋଟି କାମ କରନ୍ତି ବଡ଼ ନିର୍ଭୁଲ ଭାବରେ କରନ୍ତି । ବସା ତିଆରି କରିବା, ଜନ୍ମ ହେଲା ପରେ ପରେ ଖୁଣ୍ଟି ଖାଇବାକୁ ଆରମ୍ଭ କରିବା, ଜୀବନ ସଂଗ୍ରାମରେ ଆବଶ୍ୟକ ଅନୁଯାୟୀ କାମ କରିବା ପ୍ରଭୃତି କାର୍ଯ୍ୟାବଳୀ ପକ୍ଷୀମାନଙ୍କୁ ଶିଖିବାକୁ ହୁଏନା । ଏ ସବୁ ଜନ୍ମଗତ । ତେଣୁ ପଶୁପକ୍ଷୀ ଛୁଆମାନେ ଜନ୍ମ ହେବାର ସାମାନ୍ୟ କେତୋଦିନ ପରେହିଁ ସ୍ୱାଧୀନ ଭାବରେ ଜୀବନ ଧାରଣ କରିପାରନ୍ତି । କିନ୍ତୁ ମନୁଷ୍ୟଶିଶୁକୁ ଅନେକ ଦିନ ଧରି ବାପ ମା ଓ ଅନ୍ୟାନ୍ୟମାନଙ୍କ ଉପରେ ବହୁତ ବେଶି ନିର୍ଭର କରିବାକୁ ପଡ଼େ । କାରଣ ସାମାନ୍ୟ କେତୋଟି ଜନ୍ମଗତ ପ୍ରବୃତ୍ତି ଛଡ଼ା ତାକୁ ମନୁଷ୍ୟ ସମାଜ ଭିତରେ ବହୁତ କିଛି ଶିଖିବାକୁ ହୋଇଥାଏ, ଏବଂ ଶିକ୍ଷା ତାର ଉନ୍ନତ ମସ୍ତିଷ୍କ ଓ ବୁଦ୍ଧି ବଳରେ ସମ୍ଭବ ହୁଏ । କେବଳ ବ୍ୟକ୍ତିଗତ ଉନ୍ନତ ବୁଦ୍ଧି ଯଥେଷ୍ଟ ନୁହେଁ । ସମ୍ପ୍ରଦାୟ ମନୁଷ୍ୟ ସମାଜର କ୍ରମୋନ୍ନତି ହୋଇ ଆସୁଅଛି । ତା' ଅର୍ଥ ଆମର ଭଲମନ୍ଦ ଆମ ଚେଷ୍ଟା ଉପରେ ନିର୍ଭର କରେ, ପଶୁପକ୍ଷୀମାନଙ୍କ ପରି କେବଳ ଖାଇ ପିଇ ଛୁଆ ଜନ୍ମ କରି ମରି ଯିବାରେ ଆମର ସାର୍ଥକତା ରହେ ନାହିଁ । ଏତଦ୍‌ବ୍ୟତୀତ ଆମର ଆହୁରି ଅନେକ କିଛି

ଆବଶ୍ୟକ । ତେଣୁ ଆମକୁ ଜୀବନ ଧାରଣ ଲାଗି ବହୁତ ପରିଶ୍ରମ କରିବାକୁ ହୁଏ ଏବଂ ତା ସଙ୍ଗେ ସଙ୍ଗେ ସାହିତ୍ୟ, କଳା, ବିଜ୍ଞାନ ପ୍ରଭୃତି ସୃଷ୍ଟି କରି ଆମ୍ଭେମାନେ ଜୀବନ ଉପଭୋଗ କରିପାରୁ । ଆଜି ଯେ ଅଜେୟ ପ୍ରକୃତି ମଣିଷର ମିଳିମିଶି ଅନେକ ପ୍ରାକୃତିକ ଶକ୍ତିକୁ ଆପଣର ସୁବିଧା ଲାଗି ଉପଯୋଗ କରି ପାରୁଛି ତାହା ଆମ ଶକ୍ତିର ଯଥେଷ୍ଟ ପରିଚୟ ଦିଏ ନାହିଁକି ? ପ୍ରକୃତି ସାହାଯ୍ୟରେ ପ୍ରକୃତିକୁ ପରାସ୍ତ କରିଛୁ; ହଜାର ହଜାର ମାଇଲ ବ୍ୟାପୀ ବିସ୍ତୃତ ସମୁଦ୍ର, ଅଗ୍ନାଗ୍ନି ଗିରିକନ୍ଦର, ପ୍ରଖର ସ୍ରୋତା ସ୍ରୋତସ୍ୱିନୀ ପ୍ରଭୃତି ବିରାଟ ପ୍ରାକୃତିକ ପ୍ରତିବନ୍ଧକ ଆଗରେ ମନୁଷ୍ୟ ଆଜି କିଂକର୍ତ୍ତବ୍ୟ ବିମୂଢ଼ ଅବସ୍ଥାରେ ଦୁର୍ବଳ ଭାବରେ ଠିଆ ହୋଇ ଏମାନଙ୍କୁ ଅନାୟତ୍ତ ଦେବତା ହିସାବରେ ପୂଜା କରୁ ନାହିଁ; ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ପ୍ରଭୃତିଙ୍କ ଆଗରେ କାକୁତି ମିନତି କରି ନିଜର ଖାଦ୍ୟ ସଂଗ୍ରହ ଲାଗି ପ୍ରାର୍ଥନା କରିବାକୁ ଲଜ୍ଜାବୋଧ କରୁଛୁ; ଛେଳି, କୁକୁଡ଼ା, ଘାଣ୍ଟି, ବଳଦର ରକ୍ତଦାନ କରି ପୃଥିବୀର ଉର୍ବରତା ବଢ଼ାଇବାର ସଂଗ୍ରାମ ମଣ୍ଡପରେ ଆଉ ନାହିଁ; ହଇଜା, ବସନ୍ତ, କୁଷ୍ଠ ପ୍ରଭୃତି ନିଦାରୁଣ ରୋଗର ଅଧିଷ୍ଠାତ୍ରୀ ଦେବୀମାନଙ୍କ ଆଗରେ ନତ ମସ୍ତକ ହୋଇ ପ୍ରାଣଭିକ୍ଷା କରିବାକୁ ସେ ଯାଉନାହିଁ—କାହିଁକି ? କାରଣ ମନୁଷ୍ୟ ଆଜି ତାର ଅନ୍ତର୍ନିହିତ ଶକ୍ତି ବିଷୟରେ ଯଥେଷ୍ଟ ସଚେତନ ହୋଇ ଯାଇଛି ଏବଂ ସେହି ଶକ୍ତି ବଳରେ ଏ ସମସ୍ତ ଶତ୍ରୁକୁ ନିଜର କବଳସ୍ଥ କରିପାରୁଛି ଏବଂ ଯେତିକି କବଳସ୍ଥ କରୁଛି ସେତିକି ତାର ଆତ୍ମବିଶ୍ୱାସ ବଢ଼ିଯାଉଛି—ସେ ଆଗେଇ ଚାଲିବାରେ ଅଧିକ ଦୃଢ଼ ପରିକର ହୋଇ ଉଠୁଛି । ମଣିଷର ଏ ଚେଷ୍ଟାରେ ପ୍ରକୃତି ଯେତେ ପ୍ରତିବନ୍ଧକ ରୂପେ ଠିଆ ହେଉଛି

ସେମାନଙ୍କ ମଧ୍ୟ ସାହାଯ୍ୟ କରୁଛନ୍ତି । ପ୍ରକୃତି ସେପରି ଅପେକ୍ଷା କରି ରହିଛି ମନୁଷ୍ୟର ବଶୀଭୂତ ହେବା ଲାଗି । ମନୁଷ୍ୟ ସୃଷ୍ଟି କରିବାର ବାଧା ଓ ଉତ୍ପାତ ଏତେ ବେଶି ଯେ ସେ ସହଜରେ ପ୍ରକୃତି ଆଗରେ ହଟି ଯାଏନା । ଜଣେ ହଟିଗଲେ ଆଉ ଜଣେ ତା ସ୍ଥାନକୁ ବାହାରି ଆସେ । ଜଣେ ପକ୍ଷୀ ପରି ଉଡ଼ିବାକୁ ଚେଷ୍ଟା କରିବାକୁ ଯାଇ ପ୍ରାଣତ୍ୟାଗ କଲେ ପରେ ପରେ ଆଉ ଜଣେ ବାହାରି ଆସେ ତାରି ଅସମ୍ପୂର୍ଣ୍ଣ ଆଶା ସଫଳ କରିବା ପାଇଁ । ଶେଷରେ କେହି ହେଲେ ନିଶ୍ଚୟ କୃତକାର୍ଯ୍ୟ ହୁଏ । ତା ନ ହୋଇଥିଲେ ଆଜି ଆମେମାନେ ସଭ୍ୟତା ଓ ସଭ୍ୟତାର ଏତେ ଉପରକୁ ଆସିପାରି ନ ଥାନ୍ତେ—ପ୍ରକୃତିକୁ ବଶୀଭୂତ କରି ଇଚ୍ଛାନୁସାରେ ଜୀବନଧାରଣ କରୁ ନ ଥାନ୍ତେ; ପକ୍ଷୀପରି ଆକାଶରେ ଉଡ଼ୁ ନ ଥାନ୍ତେ, କି ମାଛପରି ପାଣିରେ ଭାସୁ ନ ଥାନ୍ତେ । ଦୂରଦର୍ଶୀ ଯନ୍ତ୍ର ନବାଣୁଠାରୁ ଆରମ୍ଭ କରି କୋଟି କୋଟି କୋଶ ଦୂରରେ ଥିବା ଜ୍ୟୋତିଷ୍କମାନଙ୍କ ବିଷୟରେ ଅବାଧରେ ଗବେଷଣା ଚଳାଇ ନ ଥାନ୍ତେ । ମୋଟା ମୋଟି ବର୍ତ୍ତମାନ ପର୍ଯ୍ୟନ୍ତ ମଣିଷ ବୁଦ୍ଧି ବଳରେ ଯେଉଁ ଅସାଧାରଣ ସାଧନ କରିଛି ତାହା କଣ ଆମମାନଙ୍କର ଉତ୍କୃଷ୍ଟ ଶକ୍ତିର ପରିଚୟ ଦିଏ ନାହିଁ ?

ତେବେ ଏଠି ପ୍ରଶ୍ନ ଉଠିପାରେ ଯେ ଆମେ ଯେଉଁ ଯନ୍ତ୍ରମାନଙ୍କରେ ଅସାଧାରଣ ଶକ୍ତିରେ ବଳୀୟାନ୍ ହୋଇ ଉଠିଛୁ ସେହି ଯନ୍ତ୍ରମାନଙ୍କରେ ମଧ୍ୟ ଆମର ଅନ୍ୟାନ୍ୟ ଦୁଃଖ ଯନ୍ତ୍ରଣାର ମାତ୍ରା ବଢ଼ି ଚାଲିଛି । ଦ୍ରୁତଗାମୀ ଉଡ଼ାଜାହାଜ ସାହାଯ୍ୟରେ ହଜାର ହଜାର ମାଇଲ ଏକା ଦମକେ ଅତିକ୍ରମ କରି ବହୁ

ମୁମୂର୍ଷୁ ବ୍ୟକ୍ତିକୁ ଔଷଧ ଖାଦ୍ୟ ପ୍ରଭୃତି ଦେଇ ମୃତ୍ୟୁ ମୁଖରୁ ଉଦ୍ଧାର କରିବାର ଶକ୍ତି ଆମର ଅଛି ସତ କିନ୍ତୁ ସେହି ଦୂରଗାମୀ ବିମାନ ସାହାଯ୍ୟରେ ଆମେ ଯୁଦ୍ଧ ସମୟରେ ଲକ୍ଷ ଲକ୍ଷ ନିରୀହ ନରନାରୀଙ୍କ ମୃତ୍ୟୁମୁଖକୁ ମଧ୍ୟ ଠେଲି ଦେଉଛୁ । ଯେଉଁ ପରମାଣୁ ଶକ୍ତି ଆମର ପୃଥିବୀର ସମସ୍ତ ଦୁଃଖ ଦାରିଦ୍ର୍ୟ ଘୁଞ୍ଚାଇ ଦେଇପାରେ, ସେହି ପରମାଣୁ ବୋମାର ଭୟରେ ସାରା ପୃଥିବୀ ଆଜି ଆତଙ୍କିତ ହୋଇ ଉଠିଛି । ହୁଏତ ନିକଟ ଭବିଷ୍ୟରେ ସାରା ମାନବ ସମାଜ ହାଇଡ୍ରୋଜେନ ବୋମାଦ୍ୱାରା ଧ୍ୱଂସ ହୋଇଯାଇ ପାରେ । ତେବେ ଆମର ସୁଖ ସମୃଦ୍ଧି ବଢ଼ିଲା କିପରି ? ଆମେ ସ୍ୱତଃର ସମୋନ୍ନତ ଶିଖରେ ଦେଖିବୁ ଆଗେଇ ଚାଲିଛୁ କିପରି ? ଆମର ସାମର୍ଥ୍ୟ ସହିତ ଆମର ଦୁର୍ବଳତା ଗୁଡ଼ିକ ମଧ୍ୟ ବହୁ ପରିମାଣରେ ବଢ଼ି ଯାଇ ନାହିଁକି ? ଏ ପ୍ରକାର ସମସ୍ୟାର ସରଳ ଓ ସ୍ପଷ୍ଟଭାବ ସମାଧାନରେ ପହଞ୍ଚିବା ବଡ଼ କଷ୍ଟ । ତେବେ ଏତିକି କୁହାଯାଇପାରେ ଯେ ଯେଉଁ ଶକ୍ତି ବଳରେ ଆମେମାନେ ଆଗେଇ ଚାଲିଛୁ, ସେହି ଶକ୍ତିବଳରେହିଁ ଆମେ ଆମକୁ ଟାଣି ଆଣୁଥିବା ଦୁର୍ବଳତାକୁ ପରାସ୍ତ କରି ପାରିବୁ । ଅବଶ୍ୟ ଆମର ଦୁର୍ବଳତା ଗୁଡ଼ିକୁ ଧରି ବୋଲି ଧରି ନେବା ଉଚିତ ନୁହେଁ । ଏହାର ପ୍ରଭାବ ବହୁତ ବେଶି । ଯଥା ସମୟରେ ଦୁର୍ବଳତା ଗୁଡ଼ିକୁ ଅନୁଧ୍ୟାନ ନ କଲେ ସର୍ବନାଶ ହେ ନ ଥିବ ନୁହେଁ । ଇତିହାସର ପୃଷ୍ଠେ ପୃଷ୍ଠେ ଏହାର ନମୁନା ମିଳେ କିନ୍ତୁ ତା ବୋଲି ଦୁର୍ବଳତାକୁ ଅପରିହାର୍ଯ୍ୟ ବୋଲି ଧରି ନେବା ଭୁଲ । ଅନେକ ସମୟରେ ଆମେମାନେ କହୁଥାଉଁ ଯେ ଅମୁକ ଘଟଣାଟା ଘଟିବା ସ୍ୱାଭାବିକ— ଏହା ମଣିଷ ପ୍ରକୃତି; ଯୁଦ୍ଧ ହେବା ସୁନିଶ୍ଚିତ—ଏହା ମଣିଷର ସ୍ୱଭାବଗତ ଏବଂ ଏହାକୁ ପ୍ରତିପାଦିତ କରିବାପାଇଁ ପଶୁ ଜଗତର

ଉପେକ୍ଷା ମଧ୍ୟ କରାଯାଇଥାଏ । ଅବଶ୍ୟ ପଶୁ ପ୍ରବୃତ୍ତି ଗୁଡ଼ିକ ମଣିଷମାନଙ୍କ ଭିତରେ ଜଣା ଅଧିକେ ଅଛି । କିନ୍ତୁ ତା' ବୋଲି ଠିକ୍ ସେହିପରି ନଗ୍ନ ଭାବରେ ଏହି ପଶୁ ପ୍ରବୃତ୍ତି ଗୁଡ଼ିକ ଯେ ଆମ ଭିତରେ ଆଧିପତ୍ୟ ବିସ୍ତାର କରିବ, ତା ଠିକ୍ ନୁହେଁ । ଯେଉଁ ଶକ୍ତି ବଳରେ ଆମେମାନେ ସେମାନଙ୍କଠାରୁ ଏତେ ବେଶି ବଳୀୟାନ୍ ହୋଇ ପାରିଛୁ ସେହି ଶକ୍ତି ବଳରେ ଆମେମାନେ ଦୁର୍ବଳତା ଗୁଡ଼ିକୁ ମଧ୍ୟ ନିୟନ୍ତ୍ରିତ କରି ପାରିବୁ । ଯେତେବେଳେ ଏହା ସମ୍ଭବ ହୁଏନା ସେତେବେଳେ ପୃଥିବୀରେ ଭୟଙ୍କର ମହାଦୁର୍ଯୋଗପୂର୍ଣ୍ଣ ପରିସ୍ଥିତି । ସୃଷ୍ଟି ହୁଏ । ଜଙ୍ଗଲ ପ୍ରସୂତ ସମସ୍ତ ମୂଳକ ପଶୁ ପ୍ରବୃତ୍ତିର କୁଟିଳ ଆବର୍ତ୍ତ ମଧ୍ୟରେ ଆସି ପଡ଼େ । ଫଳରେ ଦ୍ୱନ୍ଦ୍ୱ ଦେଖାଯାଏ ଓ ଭୟଙ୍କର ଧ୍ୱଂସ ମଧ୍ୟ ଘଟିଥାଏ । ମନୁଷ୍ୟର ବ୍ୟକ୍ତିଗତ ସ୍ୱାର୍ଥ, ସଙ୍କୀର୍ଣ୍ଣତା; ହିଂସା, ଦ୍ୱେଷ; ପରଶ୍ରୀକାତରତା, ନିଜ ସୁଖଶାନ୍ତି ପାଇଁ ଅଦମ୍ୟ ଚେଷ୍ଟା ଓ ପ୍ରଚୁର ସମ୍ପତ୍ତି ସଞ୍ଚୟ କରିବାରେ ବଳବତୀ ଇଚ୍ଛା ପ୍ରଭୃତି ଦୁର୍ବଳତା ଯେ ଭୟଙ୍କର ଷଡ଼ଯନ୍ତ୍ରକାରକ ଏଥିରେ ସନ୍ଦେହ ନାହିଁ । ତେଣୁ ମନୁଷ୍ୟର ଆଗେଇ ଚାଲିବାର ଅନ୍ତର୍ନିହିତ ଶକ୍ତି ଯେ ତାର ଦୁଃଖ ଯନ୍ତ୍ରଣାର ମୂଳରେ ଅଛି ତା ନୁହେଁ । ତା'ର ଦୁର୍ବଳତା ସବୁ ସେହି ଶକ୍ତି ପ୍ରସୂତ ଫଳାଫଳକୁ ଠିକ୍ ଢଙ୍ଗରେ ବ୍ୟବହାର କରିବାରେ ବାଧା ସୃଷ୍ଟି କରେ । କିନ୍ତୁ ଚେଷ୍ଟା କଲେ ନିଶ୍ଚୟ ଉପରୋକ୍ତ ଦୁର୍ବଳତା ସବୁକୁ ଆୟତ୍ତାଧୀନ କରାଯାଇ ପାରିବ । ବର୍ତ୍ତମାନ ପରିସ୍ଥିତିରେ ଆମେମାନେ ଯେପରି ଦ୍ରୁତଗତିରେ ଗୋଟିଏ ଦିଗରେ ଆଗେଇ ଯାଉଛୁ, ସେତେ ଶୀଘ୍ର ଆମର ଦୁର୍ବଳତା ଗୁଡ଼ିକୁ ନିୟନ୍ତ୍ରିତ କରିପାରୁ ନାହିଁ । ସେଥିପାଇଁ ପରମାଣୁ ଶକ୍ତି ପରି ବିରାଟ ଦାନକୁ ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ନିଜର ସୁବିଧା ଲାଗି

ବ୍ୟବହାର କରିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ମାନବସମାଜର ସଂଘବଦ୍ଧ ଚେଷ୍ଟା ଯେ ଏ ପ୍ରକାର ଉଦ୍ୟମକୁ ବିଫଳ କରି ଦେଇ ପାରିବ ଏଥିରେ ସନ୍ଦେହ ନାହିଁ । ଅବଶ୍ୟ ଏହା ସମ୍ଭବ ହେବା ପୂର୍ବରୁ ଆମ୍ଭମାନଙ୍କୁ କେତେଗୁଡ଼ିଏ ବ୍ୟକ୍ତିଗତ ଓ ଜାତିଗତ ସଙ୍କୀର୍ଣ୍ଣ ଦୁର୍ବଳତା ଛାଡ଼ି ଏ ଦିଗରେ ଅଗ୍ରସର ହେବାକୁ ହେବ । ତା' ନ ହେଲେ ପୃଥିବୀବ୍ୟାପୀ ଏ ପ୍ରକାର ଷଡ଼ଯନ୍ତ୍ର ଉପସ୍ଥିତିର ସମ୍ମୁଖୀନ ହେବା ଲାଗି ଆମର ଶକ୍ତି ଯଥେଷ୍ଟ ହେବ ନାହିଁ । ତେଣୁ ଆମର ଯେ ଏ ଦିଗରେ ସାମର୍ଥ୍ୟ ନାହିଁ ତା ନୁହେଁ; କିନ୍ତୁ ସେ ସାମର୍ଥ୍ୟକୁ କେନ୍ଦ୍ରୀଭୂତ କରି ଗୋଟିଏ ଦିଗରେ ପ୍ରୟୋଗ କରିବାର ଚେଷ୍ଟା ହେବା ଉଚିତ । ତା ହେଲେ ବ୍ୟକ୍ତି ବିଶେଷ ବା ମୁଷ୍ଟିମେୟ ଲୋକଙ୍କର ଦୁର୍ବଳତା ସମଷ୍ଟିଗତ ଶକ୍ତି ବଳରେ ନିଶ୍ଚୟ ସମ୍ପୂର୍ଣ୍ଣ ରୂପେ ପରାସ୍ତ ହୋଇ ପାରିବ ।



( କଟକ ବେତାର କେନ୍ଦ୍ର କର୍ତ୍ତୃପକ୍ଷଙ୍କ ସୌଜନ୍ୟରୁ )

# ସମାଜ ଗଠନରେ ଦର୍ଶନ

ବ୍ୟକ୍ତି ଜନ୍ମରୁ ଜୀବନ ଯାପନ ପ୍ରଣାଳୀ ଅର୍ଥାତ୍ ଧର୍ମଗତ, ନୀତିଗତ ଓ ଅନ୍ୟାନ୍ୟ ବ୍ୟକ୍ତିଗତ ତଥା ସାମାଜିକ କ୍ରିୟାପ୍ରକ୍ରିୟା ସମାଜର ସାଧାରଣ ଅନୁମୋଦିତ ଶିଷ୍ଟଚରିତ ସଂସ୍କାର ଦ୍ୱାରା ପ୍ରଭାବିତ ହୋଇଥାଏ । ଶିଶୁ ଜନ୍ମହେବା ଦିନଠାରୁ ତାର ମା, ବନ୍ଧୁବାନ୍ଧବ, ପ୍ରତିବେଶୀ, ସ୍କୁଲଶିକ୍ଷକ, ସାଙ୍ଗସାଥୀ ପ୍ରଭୃତି ବିଭିନ୍ନ ସାମାଜିକ ପ୍ରତିନିଧି ଏବଂ ଘର, ସ୍କୁଲ ଖେଳପଡ଼ିଆ ପ୍ରଭୃତି ନାନାପ୍ରକାର ସାମାଜିକ ଅନୁଷ୍ଠାନ ଭିତର ଦେଇ ତାହାର ମନୋଭାବ, ଆଚାର ବ୍ୟବହାର, ବାକ୍ୟଶୈଳୀର ପ୍ରଭୃତି ସଂସ୍କାର ଗଠିତ ହୁଏ—ଅନ୍ୟାନ୍ୟ ଅନେକ ପ୍ରକାର ସଂସ୍କୃତ ମାନସିକ ଧାରଣା ମଧ୍ୟ ଜନ୍ମେ । ତେଣୁ ବ୍ୟକ୍ତିଠାରେ ଏ ସବୁର ପାରମ୍ପରିକ କ୍ରିୟାଫଳ ମାତ୍ର । ଅବଶ୍ୟ ଏ ପ୍ରକାର କ୍ରିୟା ଏକଚେଟିଆ ନୁହେଁ । ବ୍ୟକ୍ତିଗତ ମନୋଭାବ ସମଷ୍ଟିଗତ କ୍ରିୟା ପ୍ରକ୍ରିୟାକୁ ମଧ୍ୟ ବଦଳାଇଥାଏ । ମନୁଷ୍ୟର ଚିନ୍ତାଧାରା ସେଥିରେ ଦ୍ୱନ୍ଦ୍ୱ ସୃଷ୍ଟି କରେ । ସର୍ବସାଧାରଣ ଅନୁମୋଦିତ ସାମାଜିକ ପ୍ରଣାଳୀରେ ପରିବର୍ତ୍ତନ ଦେଖାଦିଏ; ଶିଷ୍ଟଚରିତ ସମଷ୍ଟିଗତ ସଂସ୍କୃତି, ଆଚାରବ୍ୟବହାର ବଦଳି ଯାଏ—ଫଳରେ ନୂଆ ସମାଜର ସୃଷ୍ଟି ହୁଏ । ଲୋକେ ନୂତନ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତି । ପୁରୁଣା ସମାଜ ପ୍ରତିକ୍ରିୟାଶୀଳ ହୋଇପଡ଼େ—ଅର୍ଥାତ୍ ଜନମାନଙ୍କର ଅଗ୍ରଗତିରେ ସାହାଯ୍ୟ କରିବା ପରିବର୍ତ୍ତରେ ବାଧା ସୃଷ୍ଟି କରେ । ତେଣୁ ପ୍ରଗତିଶୀଳ ଲୋକେ ତାକୁ ଛାଡ଼ି ନୂତନ ଆଦର୍ଶରେ ଆଗେଇ ଚଳନ୍ତି ।

ଦର୍ଶନ ହେଉଛି ବ୍ୟକ୍ତିଗତ ମନୋଭାବ ଓ ସମଷ୍ଟିଗତ ଆଦର୍ଶର ସୂକ୍ଷ୍ମ ସମାଲୋଚନା—ଅବସାଶକ୍ତିର ବଳିଷ୍ଠ ପରାମର୍ଶ-ଦାତା ଓ ପ୍ରକୃତ ପଥପ୍ରଦର୍ଶକ । ପ୍ରତ୍ୟେକ ଦେଶର, ପ୍ରତ୍ୟେକ ଜାତିର ଓ ପ୍ରତ୍ୟେକ ଯୁଗର ଦର୍ଶନ ସେହି ସମୟର ଓ ସେହି ଯୁଗର ସାମାଜିକ ପରିସ୍ଥିତିର ଚିନ୍ତାଧାରା ମାତ୍ର । କିନ୍ତୁ ତା ବୋଲି ଏହା କେବଳ କଳ୍ପନା ସୃଷ୍ଟି ଭାବଧାରାରେ ସୀମାବଦ୍ଧ ନୁହେ କିମ୍ବା ଜୀବନପ୍ରବାହର ପାର୍ଶ୍ୱଦେଶରେ ଶକ୍ତିଶୂନ୍ୟ ଉଦାସୀନ ମସ୍ତିଷ୍କର ପ୍ରବାହହୀନ ସମାଲୋଚନା ନୁହେ । ବରଂ ଏହା ପଞ୍ଚଇନ୍ଦ୍ରିୟ ଅଜ୍ଞାତ ଓ ଅଦୃଷ୍ଟ ଭବିଷ୍ୟତର ସୂକ୍ଷ୍ମସୂକ୍ଷ୍ମ ସୁସଙ୍ଗତ ପ୍ରଶିକ୍ଷା । ତେଣୁ ବ୍ୟକ୍ତି ତଥା ସମଷ୍ଟିଗତ ଧର୍ମୀୟପ୍ରକ୍ରିୟା ଏହାଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଏ ପ୍ରକାର ଜ୍ଞାନ ବା ଚିନ୍ତାଧାରା ସେପରି ଯୁଗରେ ମନୁଷ୍ୟସମାଜ ସମ୍ମତ ପୂର୍ବପୂର୍ବ ଖାପ ନ ଖାଇଲେ ମଧ୍ୟ ସମାଜର ଅଗ୍ରଗତିରେ ବହୁତ ସାହାଯ୍ୟ କରେ, ଅନ୍ୟତଃ ପଶ୍ଚାତ୍‌ମୁଖୀ ଦର୍ଶନପରି ପ୍ରଗତିପ୍ରାଣୀକି ଓ ଗତିରୋଧକାରୀ ପ୍ରତିବନ୍ଧକରୂପେ କାର୍ଯ୍ୟ କରେ ନାହିଁ । ଏଥିରେ ଅତୀତର ପ୍ରଭାବ ଯେ ନାହିଁ, ତା ନୁହେଁ । ଅତୀତ ଭବିଷ୍ୟତ ମଙ୍ଗଳରୂପେ କାର୍ଯ୍ୟ କଲେ ହେଁ ଏହା ଗତିକୁ ଟାଣି ବୃଥା ଶକ୍ତି ନଷ୍ଟ କରେନାହିଁ । ବରଂ ଯେଉଁ ଦର୍ଶନର ଆଗକୁ ଟାଣିବାର ଶକ୍ତି ଯେତେ ବେଶି, ତାହାର ଅତୀତ ମୂଲ୍ୟଭିତ୍ତି ସେତେ ସୁଦୃଢ଼ । ତେଣୁ ପ୍ରାୟ ଦେଖାଯାଏ ଯେ ପ୍ରଗତିଶୀଳ ଜାତିମାନଙ୍କର ଅତୀତ ପ୍ରତି ଶ୍ରଦ୍ଧା ଅଛି, କିନ୍ତୁ ଅଯଥା ମୋହ ନାହିଁ; ସେମାନେ ଅତୀତର ବଂଶଧରରୂପେ ଗର୍ବ କରନ୍ତି କିନ୍ତୁ ସେ ଯୁଗକୁ ଫେରି ଯିବାରେ ଆଗ୍ରହୀ ନୁହନ୍ତି । କିନ୍ତୁ ଅନୁନ୍ନତ ଜାତି-ମାନଙ୍କର ଅତୀତହିଁ ସର୍ବସ୍ୱ—ସବୁ ସୁଖସମୃଦ୍ଧିର ରାମରାଜ୍ୟ । ସମସ୍ତ ଶକ୍ତି ଦେଇ ସେହି ପ୍ରାଚୀନ ଅତୀତକୁ ଫେରିଯିବାରେ ସେମାନଙ୍କର ପ୍ରବଳ ଆଗ୍ରହ ।

ଏଥିରୁ ସମାଜ ଗଠନରେ ଦର୍ଶନର ବିଶେଷ ପ୍ରଭାବ ସହଜେ ଅନୁମେୟ । ବିନା ଦର୍ଶନରେ କୌଣସି ବ୍ୟକ୍ତି ବଞ୍ଚିପାରେ ନାହିଁ—କୌଣସି ମାନବସମାଜ ମୃତ୍ୟୁରୁ ମୁକ୍ତି ପାଇ ପାରେ ନାହିଁ । ଏଥିରେ କି ମନୁଷ୍ୟ ପଶୁଠାରୁ ଉପାର୍ । ତେଣୁ ମନୁଷ୍ୟ ସମାଜରେ ଦର୍ଶନର ପ୍ରଭାବ ଅଛି କି ନାହିଁ ବୋଲି ପ୍ରଶ୍ନ କରିବା ଭୁଲ ହେବ । କାରଣ ପ୍ରତ୍ୟେକର କୌଣସି ନା କୌଣସି ଗୋଟିଏ ଦର୍ଶନ ଅଛି । ଆସଲ ପ୍ରଶ୍ନ ହେଉଛି, କେଉଁ ଦର୍ଶନ ଠିକ୍ ଓ କେଉଁ ଦର୍ଶନ ଭୁଲ—ଅର୍ଥାତ୍ କେଉଁ ଦର୍ଶନ ମାନବ ସମାଜର ହିତକାରୀ ଓ କେଉଁ ଦର୍ଶନ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ସୁଖସ୍ୱାଚ୍ଛନ୍ଦ୍ୟ ଏବଂ ସମଷ୍ଟିଗତ ଜୀବନର ଅନିଷ୍ଟକାରୀ । ଏ ପ୍ରକାର ପ୍ରଶ୍ନର ସମାଧାନ ଏକ୍ତୁ ଅସମ୍ଭବ । ଏହାର ଖେକ୍‌ଠୋକ୍ ଉତ୍ତର ନ୍ୟାୟସଙ୍ଗତ ନୁହେଁ—ସ୍ୱଭାବୀକ ମଧ୍ୟ ନୁହେଁ । କିନ୍ତୁ ଦେଶ କାଳ ପାତ୍ର ଓ ଅବସ୍ଥା ଅନୁସାରେ ଏହାର ଆପେକ୍ଷିକ ସମାଧାନ କରିହୋଇପାରେ । ସମୟ ଓ ପରିସ୍ଥିତି ଅନୁଯାୟୀ ଏହା ବଦଳିବା ସ୍ୱାଭାବିକ—ନ ବଦଳିବା ହିଁ ଅନ୍ୟାୟ ଓ ଅସ୍ୱାଭାବିକ । ଖାଲି ସାମାଜିକ ଆଦର୍ଶ, ଧର୍ମଗତ ଦର୍ଶନ ଓ ବ୍ୟକ୍ତିଗତ ଭଲ ମନ୍ଦ ଧାରଣା, ସବୁ ପ୍ରକାର ମାନବିକ ଜ୍ଞାନ ବିଜ୍ଞାନ; ନିୟମ କାନୁନ ଏଠାରେ ଆପେକ୍ଷିକ ଏବଂ ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ରୂପ ଧାରଣ କରିଥାଏ । ଯେଉଁମାନେ ସନାତନ ଶାଶ୍ୱତ ସତ୍ୟରେ ବିଶ୍ୱାସ କରନ୍ତି, ସେମାନେ ମନୁଷ୍ୟର ବୋଧଶକ୍ତିର ଆପେକ୍ଷିକତା ତଥା ପ୍ରକୃତ ସମୃଦ୍ଧିର କ୍ରମାଗତ ବିଶେଷ ଅନୁଭୂତିଶକ୍ତି ବିଷୟରେ ସଚେତ ନୁହନ୍ତି । ଏଜନର ଆହମିକା ଯୋଗୁଁ ଏ ପ୍ରକାର ଚିନ୍ତାଧାରା ସମ୍ଭବ ହୋଇଥାଏ । ଏମାନେ ଜୀବନପ୍ରବାହର ପ୍ରତି ମୁହୂର୍ତ୍ତରେ ଅଜଣାତ ନୂତନତ୍ୱ ପ୍ରତି ବିଶ୍ୱାସଘାତକତା କରିଥାନ୍ତି । ଏମାନଙ୍କର ଭଗବାନ ମଧ୍ୟ ପୁରୁଣା

ଶକ୍ତି ଉଦ୍ଭୂତ, ଗତିସ୍ଥାନ, ଦୋଷତ୍ରୁଟିଶୂନ୍ୟ, ପୂର୍ଣ୍ଣତାପ୍ରାପ୍ତ ପରିସମାପ୍ତି । ଅବଶ୍ୟ ସେମାନେ ଏପ୍ରକାର ବିଶେଷଣ ପ୍ରୟୋଗରେ ସ୍ପଷ୍ଟ ହେବେ ନାହିଁ । କିନ୍ତୁ ଖୁବ୍ ସୂକ୍ଷ୍ମ ଭାବରେ ଆଲୋଚନା କଲେ ଏପ୍ରକାର ସିଦ୍ଧାନ୍ତରେ ପହଞ୍ଚିବା ନିତାନ୍ତ ଅପାସ୍ତ ନାହିଁ । ତେବେ ଯାହାହେଉ, ଏ ପ୍ରକାର ଚରମ ସତ୍ୟ ମାନବସମାଜକୁ ବିଶେଷ ଭାବରେ ପ୍ରଭାବାନ୍ୱିତ କରି ପାରୁନାହିଁ । ବହୁ ବଡ଼ ଦାର୍ଶନିକମାନେ ବହୁତ ଯୁକ୍ତିତର୍କ ଦେଇ ଏହାକୁ ପ୍ରତିପାଦିତ କରିଥାନ୍ତି, କିନ୍ତୁ ଏହାର କାର୍ଯ୍ୟକାରୀ ଶକ୍ତି ସର୍ବଦା ସମାନ ନୁହେଁ; ଅନେକ ସମୟରେ ଯେଉଁମାନେ ଏହାର ଆବର୍ତ୍ତରେ ପଡ଼ନ୍ତି, ସେମାନେ ପଶ୍ଚାତ୍‌ମୁଖୀ, ନିଷ୍କ୍ରିୟ ମୁକ୍ତିକାମୀ ବା କାଳ୍ପନିକ ସୁଦୂର ଅନାଗତ ଭବିଷ୍ୟତର ଚରମ ସମ୍ଭାବନାରେ ଅଯଥା ଆଶାବାଦୀ । ସେମାନେ ଜୀବନ-ପ୍ରବାହର ପାର୍ଶ୍ୱଦେଶରେ ଗତିହୀନ ଦୂଷିତଜଳମୟ କର୍ଦ୍ଦମାକ୍ତ ସ୍ଥାନରେ ଅଟକି ଯାଇଥାନ୍ତି, କିମ୍ବା ସ୍ରୋତର ଅତଳ ଗର୍ଭରେ ଘୋର ନିଦ୍ରିତ ଅବସ୍ଥାରେ ସ୍ୱପ୍ନ ଦେଖି ଦେଖି ଯନ୍ତ୍ରବତ୍ ଗଡ଼ି ଚଢ଼ି ବୁଲୁଥାନ୍ତି । ତେଣୁ ସେ ସବୁ ଗ୍ରହଣୀୟ ହୋଇ ନ ପାରେ । ଯେଉଁ-ମାନେ ସ୍ରୋତମୁଖରେ ଆଗେଇ ଚାଲୁଛନ୍ତି, ସେହିମାନେହିଁ ନିଜର ସମସ୍ତ ଶକ୍ତି ଦେଇ ଅତୀତ, ଭବିଷ୍ୟତ ଓ ବର୍ତ୍ତମାନର ସମନ୍ୱୟ ପ୍ରତିଷ୍ଠିତ ଏବଂ ଭିନ୍ନ ଭିନ୍ନ ଶକ୍ତିର ଯୁକ୍ତିଯୁକ୍ତ ବିସ୍ତାର କରି ବ୍ୟକ୍ତିଗତ ତଥା ସାମାଜିକ କାର୍ଯ୍ୟାବଳୀ ନିୟନ୍ତ୍ରିତ କରିପାରନ୍ତି । ସେମାନଙ୍କର ଦର୍ଶନ ପରିବର୍ତ୍ତନଶୀଳ, ସତ୍ୟ-ଆପେକ୍ଷିକ, ତେଣୁ ନିତ୍ୟ ପରିବର୍ତ୍ତନ ଓ ଅଗ୍ରଗାମୀ ମାନବସମାଜର ପ୍ରକୃତ ହିତକାରୀ ଅନୁକୂଳ ।

ଦର୍ଶନର ଯଥାର୍ଥତା ବାସ୍ତବିକ ପରିସ୍ଥିତିରୁ ଏବଂ ଏହାର ଆପେକ୍ଷିକ ସତ୍ୟାସତ୍ୟ ବ୍ୟବହାରର ଫଳାଫଳରୁ ନିର୍ଦ୍ଧାରିତ ହେବା

ଉଚିତ । ଏ ଦୁଇଟି ମାନଦଣ୍ଡ ସାହାଯ୍ୟରେ ଆମେ ବିଭିନ୍ନ ଦର୍ଶ
ଗୁଡ଼ିକୁ ସହଜରେ ବିଚାର କରିପାରିବୁ । ନାତ୍ସୀ ଜର୍ମାନୀର 'ଉତ୍କୃଷ୍ଟ-
ତର ଜାତି' 'ଶ୍ରେଷ୍ଠ ନେତା' ପ୍ରଭୃତି ଦର୍ଶନର ଅନ୍ତର୍ନିହିତ ଅସଙ୍ଗ
ଓ ଅଯୌକ୍ତିକତା ଓ ତାର ପରିଣାମ ବିଷୟରେ ଯେ କୌଣସି
ଚିନ୍ତାଶୀଳ ବ୍ୟକ୍ତି ଉପରୋକ୍ତ ମାନଦଣ୍ଡ ସାହାଯ୍ୟରେ ଯେ ଭବିଷ୍ୟତ
ବାଣୀ ଶୁଣାଇ ପାରେ, ଏଥିରେ ସନ୍ଦେହ ନାହିଁ । ସେହିପରି ଚରମ
ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଅନିଷ୍ଟକର ପ୍ରଭାବ ବିଷୟରେ
କେତେକଜଣ ଲୋଲୁପ, ନରରକ୍ତପିପାସୁଙ୍କ ସ୍ୱାର୍ଥାନ୍ୱେଷୀଙ୍କ ବ୍ୟତୀ
ଅନ୍ୟ ସମସ୍ତେ ଏକମତ । ଏ ପ୍ରକାର ଦର୍ଶନ ପୃଥିବୀର ଭୟଙ୍କର
କ୍ଷତି କରୁଛି, ତଥାପି ତାର ଶକ୍ତି ଅନେକ କାଳ ଧରି ଲାଗିରହିଛି
କାହିଁକି ? ତାର କାରଣ, ଯେଉଁମାନେ ଏପରି ଦର୍ଶନ ପ୍ରସ୍ତୁତ
କରନ୍ତି, ବର୍ତ୍ତମାନ ପୃଥିବୀର ପରିସ୍ଥିତି ସେମାନଙ୍କର ଅନୁକୂଳ ।
ସେମାନଙ୍କ ହାତରେହିଁ ସମାଜର ସମସ୍ତ ଧନ, ସମସ୍ତ ସାମରିକ
ଶକ୍ତି, ଦେଶର ତଥାକଥିତ ସଂସ୍କୃତି, ଶିକ୍ଷା, ସାହିତ୍ୟ, କଳା ପ୍ରଭୃତି
ରହିଛି । ତେଣୁ ସେମାନଙ୍କର ଦର୍ଶନ ସମାଜର ସବୁ ସ୍ତରରେ
ଚେରମାଡ଼ି ରହିଛି । ଫଳରେ ତାର ଉଦ୍ଭଟ ତତ୍ତ୍ୱ ଏପରି ଭାବରେ
ମନୁଷ୍ୟକୁ ପ୍ରଭାବିତ କରୁଛି; କ୍ରମେ କ୍ରମେ ଅନ୍ୟାନ୍ୟ ଦାର୍ଶନିକ
ଚିନ୍ତାଧାରା ସମାଜକୁ ପ୍ରଭାବିତ କରିବାକୁ ଆରମ୍ଭ କରିଛି । ପୃଥିବୀର
ମୂର୍ଖ ଜନତା ସଚେତ ଓ ଜାଗ୍ରତ ହେଉଛନ୍ତି; ଶୋଷିତ ମାନବଜାତି
ଉତ୍ତେଜିତ ଓ ଉଜ୍ଜୀବିତ, ଅଧୀନସ୍ଥ ଦେଶସବୁ ବଳିଷ୍ଠ ହୋଇ
ଉଠୁଛନ୍ତି । ସେମାନଙ୍କର ଦର୍ଶନ ଉପରୋକ୍ତ ଦର୍ଶନଠାରୁ ସମ୍ପୂର୍ଣ୍ଣ
ପୃଥକ । ନୂତନ ଆଲୋକ ଆଗରେ ପୁରାତନ ଦର୍ଶନ ନିଷ୍ପ୍ରଭ ଓ
ନୂତନ ପରିସ୍ଥିତିରେ ତାହା ମିଥ୍ୟାରେ ପରିଣତ ହେବାକୁ ବସିଛି ।
ନୂତନ ଓ ପୁରାତନର ଏ ପ୍ରକାର ଦ୍ୱନ୍ଦ୍ୱ ହେତୁ ଯେ ଗୋଟିଏ

ମଧ୍ୟରେ ମନୋଭାବର ସମ୍ଭବ ହେବ, ଏଥିରେ ସନ୍ଦେହ ନାହିଁ । ଭାରତବର୍ଷର କେତେକ ଦାର୍ଶନିକ ଭାବଧାରା ଅନ୍ତର୍ମୁଖୀ— ତେଣୁ ଆମ୍ଭେମାନେ ଅତୀତକୁ ସ୍ୱର୍ଣ୍ଣ ବସିଛୁ । ଅତୀତର ଯାହା କିଛି ଆମ ଦୃଷ୍ଟିରେ ଗୌରବମୟ ଓ ବର୍ତ୍ତମାନର ସବୁ ସନ୍ଦେହଜନକ । ଜଣେ କିନ୍ତୁ ସମ୍ପତ୍ତିର ଅଧିକାରୀ ହେବା ପରେ ହଠାତ୍ କୃପଣ ଓ ଦରିଦ୍ର ହୋଇପଡ଼ି ଯେପରି ନିଜ ଶକ୍ତିରେ ବିଶ୍ୱାସ ହରାଇ ବସେ ଓ ପରାପରବଶ ହୋଇ ପେନ୍ସିମାନେ ନିଜ ଶକ୍ତିରେ ଅତୀତର ସ୍ମୃତିକୁ, ସେମାନଙ୍କୁ ଦୃଣା ଓ ସନ୍ଦେହ କରିବା ସହିତ ମାନବ ଅତୀତର ଉପାର୍ଜିତ ସମ୍ପତ୍ତି ଉପରେ କେବଳ ଆସ୍ଥା ରଖି ବସି ରହିଥିବା, ଆମେ ସେପରି ହୋଇପଡ଼ିଛୁ । ଆମର ସାମାଜିକ ଦର୍ଶନ ବର୍ତ୍ତମାନ ପ୍ରୟୋଗଯୋଗୀ ହୋଇ ପାରି ନାହିଁ । ଏହାର ବୈପ୍ଳବିକ ପରିବର୍ତ୍ତନ ହେବା ଦରକାର । ଅବଶ୍ୟ କେଉଁ ଦିଗରେ ଏବଂ କି ପ୍ରକାର ପରିବର୍ତ୍ତନ ହେବା ଆବଶ୍ୟକ, ତାହା ସ୍ୱତନ୍ତ୍ର ଠିକ୍ କରିବାକୁ ହେବ । ଉପରୋକ୍ତ ମାନଦଣ୍ଡ ସାହାଯ୍ୟରେ ତାହାର ଗତି ନିରୂପଣ କରି ଏପରି ଗୋଟିଏ ଦର୍ଶନ ଆଖି ଆଗରେ ରଖାଯିବା ଉଚିତ, ଯାହା ଆମ ବ୍ୟକ୍ତିଗତ ତଥା ସାମାଜିକ ଜୀବନର ପରୋକ୍ଷତ ବୈଜ୍ଞାନିକ ବିଶ୍ଳେଷଣ କରିବା ସହିତ ମାନବ ବ୍ୟକ୍ତି ଓ ମନୁଷ୍ୟର ସମୃଦ୍ଧ ଜୀବ ସାଧନ ଲାଗି ଆମ ସମାଜକୁ ଅବଶ୍ୟକ ମତରେ ବଦଳାଇ ଦେଇ ପାରିବ । କାରଣ, ଯେଉଁ ଦର୍ଶନ ପ୍ରୟୋଗଯୋଗୀ ସାମାଜିକ ଓ ସାଂସ୍କୃତିକ ବିପ୍ଳବ ଆଣିଦେଇ ନ ପାରେ, ସେ ଦର୍ଶନ ଗତିଶୀଳ ମାନବଜୀବନର ସ୍ୱତନ୍ତ୍ର ଜୀବଧର୍ମୀ ନୁହେଁ ।

———

# ଇତିହାସରେ ପ୍ରତିଭାଶାଳୀ ବ୍ୟକ୍ତିର ସ୍ଥାନ

—ଏକ—

ଯେତେ ପ୍ରକାର ଭୌତିକ, ଜୈବିକ, ମାନସିକ ଓ ସାମାଜିକ ଅବସ୍ଥିତି ଆମେ ଦେଖିବାକୁ ପାଉଁ ସେ ସବୁର ଏକ ଧାରବାହିକ ଇତିହାସ ଅଛି । ଜଡ଼ ପଦାର୍ଥର କ୍ରିୟା ପ୍ରତିକ୍ରିୟା, ପରସ୍ପର ସମ୍ପର୍କ, ତାର ଅନ୍ତର୍ନିହିତ ଶକ୍ତି, ଭବିଷ୍ୟ ପରିବର୍ତ୍ତନ ଓ ପ୍ରତିକ୍ରିୟା ବିଷୟରେ ଗଣନା କରି ଠିକଠିକ୍ ଭାବରେ ଆଗରୁ କହିହେବ । କିନ୍ତୁ କୌଣସି ଜଡ଼ ପଦାର୍ଥର ସ୍ୱାଭାବିକ କ୍ରିୟା ଫଳରେ ପ୍ରତ୍ୟେକ ଅଣୁ ପ୍ରତ୍ୟେକ ପରମାଣୁ କିପରି ଭାବରେ, କେଉଁ ଦିଗକୁ ଓ କେତେ ବେଗରେ ସଞ୍ଚଳନ ଗତି କରିବେ ତାହା କହିବା ଅସମ୍ଭବ । ତଥାପି ସ୍ଥୂଳ ପଦାର୍ଥଟିର ସାଧାରଣ କ୍ରିୟା କିପରି ଭାବରେ ସମ୍ପାଦିତ ହେବ ଏବଂ ତାର ଶେଷ ଫଳ କଣ ହେବ ତାହା ଗଣନା କରିବା ସହଜ । ଏପରି ଗଣନାରେ ମଧ୍ୟ ଗୋଟିଏ ଗୋଟିଏ କ୍ଷେତ୍ରରେ ଭୁଲ ଭଟକା ରହିଯାଇ ପାରେ । ଗଣନା ଅନୁସାରେ ଶତକଡ଼ା ଶହେ ସତ ନ ହୋଇପାରେ—ତଥାପି ଏ ସମ୍ପର୍କରେ ଯେଉଁ ତଥ୍ୟ ସ୍ଥିରୀକୃତ କରାହୁଏ ତାର ସର୍ବଗ୍ରାହ୍ୟ ଘଟଣା ଅଛି ବୋଲି ବୈଜ୍ଞାନିକମାନେ ଗ୍ରହଣ କରନ୍ତି । ଅର୍ଥାତ୍ ଭୌତିକ ନିୟମ କୌଣସି ଘଟଣା ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ଘଟିବାର କେତେଦୂର ସମ୍ଭାବନା ଅଛି ତାର ଗୋଟିଏ ସଂକ୍ଷିପ୍ତ ବ୍ୟାଖ୍ୟା ମାତ୍ର । ଜଗତରେ ଜଡ଼ ବସ୍ତୁ ସମ୍ବନ୍ଧୀୟ ତଥ୍ୟାତଥ୍ୟ ଓ ସମ୍ଭାବନା ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଅନେକଟା ନିଶ୍ଚିତ ସତ୍ୟ ସ୍ୱଭାବରେ ଗ୍ରହଣ କରାଯାଇପାରେ । ପଦାର୍ଥର ମାଧ୍ୟାକର୍ଷଣ ଶକ୍ତି—ଗ୍ରହ ନକ୍ଷତ୍ର ଓ ଜ୍ୟୋତିଷ୍କ ମଣ୍ଡଳର ସାର୍ବଭୌମ ଗତିବିଧି, ନିୟମ, ମୌଳିକ ପଦାର୍ଥର ସାଧାରଣ କ୍ରିୟା ପ୍ରକ୍ରିୟା, ବାୟୁ ଓ ମେଘର ସଞ୍ଚରଣ ପ୍ରକୃତି ବିଷୟରେ

ଗଣନାସିଦ୍ଧ ନିୟମଗୁଡ଼ିକର ନିଶ୍ଚୟତା ସମ୍ବନ୍ଧରେ କେହି ସହଜରେ ଅବିଶ୍ୱାସ କରିପାରନ୍ତି ନାହିଁ କିନ୍ତୁ ସାମାଜିକ ଘଟଣା ବା ମାନସିକ କ୍ରିୟା ପ୍ରକ୍ରିୟା କ୍ଷେତ୍ରରେ ଏପରି ସାର୍ବଭୌମ ନିଶ୍ଚିତ ନିୟମ କ୍ଷେତ୍ରରେ ବହୁ ସନ୍ଦେହାତ୍ମକ ମତ ଦେଖାଯାଏ। କେତେକ ପଣ୍ଡିତ କହନ୍ତି ଯେ ଏସବୁର ମଧ୍ୟ ନିୟମ ଅଛି ଏବଂ ତାକୁ ଠିକ୍ ଠିକ୍ ଭାବରେ ଗଣନା କରି କହିହେବ ଆଉ କେତେକ କହନ୍ତି ଯେ ଏସବୁ କ୍ଷେତ୍ରରେ କୌଣସି ପ୍ରକାର ସର୍ବସାଧାରଣ ନିୟମ ଆଦୌ କହିହେବ ନାହିଁ। ଅନ୍ୟ କେତେକ ମତ ଦିଅନ୍ତି ଯେ ଜଡ଼ ବସ୍ତୁ କ୍ଷେତ୍ରରେ ସାର୍ବଭୌମ ନିଶ୍ଚିତ ନିୟମ ପରି ସ୍ଥିର ସିଦ୍ଧାନ୍ତ ଏ କ୍ଷେତ୍ରରେ ସମ୍ଭବ ନହେଲେ ସୁଦ୍ଧା ମୋଟାମୋଟି ଭାବରେ ପ୍ରକୃତି ସଙ୍କେତ ଓ କାର୍ଯ୍ୟକାରଣ ନିୟମ ପ୍ରଣୟନ ସମ୍ଭବ ହୋଇପାରିବ।

ଜୀବ ଜଗତର କ୍ରମବିକାଶ ନେଇ ବିଜ୍ଞାନ ସମ୍ମତ ଯେଉଁ ବିବର୍ତ୍ତନ ମତବାଦର ସୃଷ୍ଟି ହୋଇଛି ସେହି ଦୃଷ୍ଟିକୋଣରୁ ମନୁଷ୍ୟ ଇତିହାସ ବିଷୟର ଅନୁଶୀଳନ କଲେ ଆମେମାନେ ବହୁ ଜଟିଳ ସାମାଜିକ ଘଟଣାଗୁଡ଼ିକରୁ ମଧ୍ୟ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ସର୍ବସାଧାରଣ ନିୟମ ଦେଖିବାକୁ ପାଉଁ। ସବୁ ମନୁଷ୍ୟମାନଙ୍କର ଶାରୀରିକ ଗଠନ ଏକାବେଳକେ ସମାନ ନ ଥିଲେ ସୁଦ୍ଧା ଶରୀରତତ୍ତ୍ୱବିତ୍ ମନୁଷ୍ୟ ଶରୀରର ଗୋଟିଏ ସାଧାରଣ ମାନଚିତ୍ର ତିଆରି କରିଥାଏ ଏବଂ ଏହି ମାନଚିତ୍ର ବା ମଡେଲଟି ଯେ ଶରୀର ବିଜ୍ଞାନ ସମ୍ମତ ଏବଂ ଡାକ୍ତର ଓ ଶରୀରତତ୍ତ୍ୱବିତ୍‌ଙ୍କର ବହୁ ଉପକାର ସାଧନ କରେ, ଏଥିରେ ସନ୍ଦେହ ନାହିଁ। କେତେକ ମନୁଷ୍ୟ ଅନ୍ୟ କେତେକଙ୍କ ଠାରୁ ଉଚ୍ଚତର ବୋଲି

ଯଦି ଆମେମାନେ କୌଣସି ନିର୍ଦ୍ଦିଷ୍ଟ ନିୟମରେ ନ ପହଞ୍ଚୁ, ତାହେଲେ ଶରୀର ବିଜ୍ଞାନ କୌଣସି ମତେ ଆଗେଇ ପାରିବ ନାହିଁ । ଏହି ମଣ୍ଡଳର ସତ୍ୟତା ଶରୀରତତ୍ତ୍ୱବିତ୍‌ମାନଙ୍କର ଅଭିଜ୍ଞତା ଓ ଅନ୍ୱେଷଣାଗାରରେ ପରୀକ୍ଷିତ ନମୁନା ଗୁଡ଼ିକର ସଂଖ୍ୟା ଉପରେ ନିର୍ଭର କରେ । କିନ୍ତୁ ଯେତେ ବ୍ୟକ୍ତିଗତ ପ୍ରଭେଦ ଥିଲେ ସୁଦ୍ଧା ଅସ୍ଥି ଚର୍ମ ମାଂସ ପ୍ରଭୃତି ପଦାର୍ଥ ଓ ରକ୍ତ ସଞ୍ଚାଳନ ଇନ୍ଦ୍ରିୟ ପ୍ରଭୃତି ପ୍ରକ୍ରିୟାର ଗୋଟିଏ ସାଧାରଣ ନିୟମ ନିଶ୍ଚିତଭାବରେ ସ୍ଥାପନ କରିହେବ ଏବଂ ଅନେକ ସ୍ଥଳରେ ଏସବୁ କାର୍ଯ୍ୟକାରୀ ହୋଇପାରିଲେ ଆମେମାନେ ତାକୁ ମୋଟାମୋଟି ଭାବରେ ଗ୍ରହଣ କରିନେଉ । ଭବିଷ୍ୟତରେ ଯେ ଏହାର ପରିବର୍ତ୍ତନ ହେବ ନାହିଁ ତା ନୁହେଁ କିନ୍ତୁ ସେଥି ସକାଶେ ଏବେଠୁ ଅବକାଶ ରଖି ଦୈନନ୍ଦିନ କାମ ପାଇଁ ଆମେମାନେ ତାରି ଉପରେ ନିର୍ଭର କରୁଁ । ଏପରି ଭାବରେ ବିଜ୍ଞାନର ବିଭିନ୍ନ ତଥ୍ୟାତଥ୍ୟର ସମାଧାନ ସମ୍ଭବ ହୋଇଛି ଏବଂ ତାରି ଉପରେ ଆମମାନଙ୍କର ଜୀବନର ପରିସର ନିର୍ଭର କରି ଆସିଛି ।

•

ଏହି ଦୃଷ୍ଟିରୁ ଦେଖିଲେ ମନୁଷ୍ୟ ଇତିହାସରେ ଲକ୍ଷ ଲକ୍ଷ ରଜା, ତେଜସ୍ୱୀ ଯୋଦ୍ଧା, ଭାବୁକ, ବୈଜ୍ଞାନିକ, କୋଟି କୋଟି ସାଧାରଣ ଲୋକଙ୍କର ଜୀବନ, ମତାମତ, ଆଦର୍ଶ ଓ କଳ୍ପନାପ୍ରସୂତ କ୍ରିୟା-ପ୍ରକ୍ରିୟା ବହୁ ଜଟିଳ ଓ ସାଧାରଣ ନିୟମ ବହିର୍ଭୂତ ବୋଲି ମନେ ହେଉଥିଲେ ସୁଦ୍ଧା ତାହାର ସଙ୍ଗତ ଆଲୋଚନା କଲେ ଏସବୁ ଭିତରେ କେତୋଟି ସାଧାରଣ ନିୟମ ଦେଖିବାକୁ ମିଳେ । ଏହି ନିୟମଗୁଡ଼ିକ ନାନା ଘଟଣା ଭିତରୁ ନିର୍ଦ୍ଧାରିତ ହୋଇଥାଏ ଏବଂ ଏସବୁ ନିୟମାନୁଯାୟୀ ଯେଉଁ ଭବିଷ୍ୟତ

କାର୍ଯ୍ୟପନ୍ଥା ନିଶ୍ଚିତ ହୁଏ ତାର କାର୍ଯ୍ୟକାରୀ ସତ୍ୟତା ଉପରେ ଏହାର ଭବିଷ୍ୟତ ନିର୍ଭର କରିଥାଏ । ତେଣୁ ମନୁଷ୍ୟର ବୁଦ୍ଧି ଏବଂ ବସ୍ତୁର ସମ୍ଭୂତ ଜ୍ଞାନ ଅତୀତ ଓ ଭବିଷ୍ୟତର ଘଟଣାବଳୀ ଅବସ୍ଥା ଓ ସଙ୍ଗଠିତ ବୈଜ୍ଞାନିକ ପ୍ରଣାଳୀଦ୍ୱାରା ଉତ୍ତମରୂପେ ପରୀକ୍ଷିତ ହୋଇ ପରେହିଁ ସୂକ୍ଷ୍ମ ସୂତ୍ର ନିୟମ ଆକାରରେ ବ୍ୟକ୍ତ ହେବା ଉଚିତ । ତେଣୁ ଏହା ବହୁ କଷ୍ଟସାଧ୍ୟ ହେଲେ ପୂରା ସମ୍ଭବ—ଭୌତିକ ତଥ୍ୟପରି ସୁନିଶ୍ଚିତ ନ ହେଲେ ସୁଦ୍ଧା । ବିଜ୍ଞାନ ପଦବାଚ୍ୟ ।

ଏପ୍ରକାର ଜ୍ଞାନ ସମାଜର ବହୁ ଉପକାର କରେ । ମନୁଷ୍ୟ ମନ ଅତୀତ ସମ୍ବନ୍ଧରେ ଅଯଥା ରହସ୍ୟାବୃତ ହୋଇ ରହେନା—ନାନା ଦୈବୀ କ୍ରିୟା ଓ ଆକସ୍ମିକ ଘଟଣା ସାହାଯ୍ୟରେ ମନୁଷ୍ୟ ସାମାଜିକ ଇତିହାସକୁ ବଦଳାଇ ଓ ନିଜର ମନକୁ କୁସଂସ୍କାର ପୂର୍ଣ୍ଣ କରେନାହିଁ । ଏହା ଅତୀତର ଅନ୍ଧକାର ସ୍ତରରେ ଆଲୋକ ପଥ-ସ୍ୱରୂପ କାର୍ଯ୍ୟ କରେ ଏବଂ ଭବିଷ୍ୟତ ପ୍ରତି ପଥ ନିର୍ଦ୍ଦେଶ କରିବାରେ ସାହାଯ୍ୟ କରେ । ବ୍ୟକ୍ତି ବିଶେଷର ଖାମଖିଆଲି ଇଚ୍ଛା ଓ ରୁଚି ଅନୁସାରେ କିମ୍ବା କୌଣସି ଆକସ୍ମିକ ଘଟଣା ଯୋଗୁଁ କୌଣସି ଜାତିର ଭାଗ୍ୟ ବିପର୍ଯ୍ୟୟ ବା ଅଭ୍ୟୁତ୍ଥାନ ନ ହୋଇ ବରଂ ସାମାଜିକ ଶକ୍ତି ଓ ମନୁଷ୍ୟର ସଙ୍ଗଠିତ ଚେଷ୍ଟା ଏବଂ ଉପଯୁକ୍ତ ପ୍ରାକୃତିକ, ଅର୍ଥନୈତିକ ପ୍ରଭୃତି ପରିସ୍ଥିତିର କ୍ରିୟାପ୍ରତିକ୍ରିୟା ଫଳରେହିଁ ସମ୍ଭବ ହୋଇଛି ବୋଲି ଜାଣି ପାରିଲେ ମନୁଷ୍ୟର ପ୍ରକୃତ ଜ୍ଞାନ ବଢ଼ିବା ସାଙ୍ଗେ ସାଙ୍ଗେ ସେହି ସବୁ ଶକ୍ତିର ଉପଯୁକ୍ତ ସନ୍ନିବେଶ କରି ଇଚ୍ଛା ଅନୁସାରେ ଇତିହାସ ସୃଷ୍ଟି କରିବାର ଚେତନା ଶକ୍ତି

ଓ ଅଭିଳାଷ ମନୁଷ୍ୟର ବୃଦ୍ଧି ପାଏ । ବିଜ୍ଞାନ ଅନୁରୂପ ନିୟମ ସାହାଯ୍ୟରେ ମନୁଷ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରର ପାରିପାର୍ଶ୍ୱିକ ଅବସ୍ଥିତି, ଶକ୍ତି ସମୂହର ପାରସ୍ପରିକ ସମ୍ପର୍କ ଓ କ୍ରିୟା ପ୍ରତିକ୍ରିୟା ସମ୍ବନ୍ଧରେ ଜ୍ଞାତ ହେବା ମାତ୍ରେ ସାଙ୍ଗେ ସେସବୁକୁ ନିୟନ୍ତ୍ରଣ କରିବାର କ୍ଷମତା ହାସଲ କରିପାରେ । ଠିକ୍ ସେମାନଙ୍କ ଇତିହାସର ଅନ୍ତର୍ନିହିତ ତତ୍ତ୍ୱ ଓ ସଂଗଠନଶକ୍ତିର ଘାତପ୍ରତିଘାତ ଜନିତ ଐକ୍ୟ ବା ଧ୍ୱଂସାତ୍ମକ ଜଗତର ସମ୍ବନ୍ଧରେ ଜ୍ଞାନ ହାସଲ କରିପାରିଲେ ବର୍ତ୍ତମାନ କ୍ଷେତ୍ରରେ ସେସବୁକୁ ନିୟନ୍ତ୍ରଣ କରି ପ୍ରୟୋଜନମତେ କାମ କରନ୍ତି । କିନ୍ତୁ ଏହାର ମୌଳିକ ନିୟମ ନବୁଝି ପର ବ୍ୟକ୍ତିଗତ ଖାମଖିଆଲ ଓ ରୁଚି ସମ୍ବନ୍ଧରେ କେବଳ ଗଦା ଗଦା ଗବେଷଣା କରନ୍ତୁ ତାହେଲେ ସେଥିରୁ ମନୁଷ୍ୟର ବିଶେଷ କିଛି ଶିଖିବାର ନ ଥାଏ । କାରଣ ମନୁଷ୍ୟର ଖିଆଲ ରୁଚି ଅନୁଭୂତି ଯୁକ୍ତି ଏତେ ବେଶି ବ୍ୟକ୍ତିଗତ ଓ ଅନିୟମିତ ଯେ ହଜାର ହଜାର ଘଟଣାର ଖିଆଲ ସମ୍ବନ୍ଧରେ ବହୁକଥା ଘଟିଲେ ସୁଦ୍ଧା ଏସବୁ ଉପରେ ନିର୍ଭର କରି ବିଶେଷ କିଛି କହିହେବ ନାହିଁ । ନିୟମ ସାର୍ବଭୌମିକ ଓ ସର୍ବସାଧାରଣ କିନ୍ତୁ ରୁଚି ବା ଖିଆଲ କେବଳ ବ୍ୟକ୍ତିଗତ । ଦୁର୍ଘଟଣା ପକ୍ଷରେ ମଧ୍ୟ କୌଣସି ବିଜ୍ଞାନ ବା ନିୟମ ନାହିଁ । ଯେତେ ଚେଷ୍ଟା କଲେ ସୁଦ୍ଧା ଦୁର୍ଘଟଣା ସମ୍ବନ୍ଧରେ ପୂର୍ବରୁ କିଛି ଜାଣିବାର ଉପାୟ ନାହିଁ । ଠିକ୍ ଇତିହାସକୁ ଦୁର୍ଘଟଣା ଓ ପ୍ରତିଭାଶାଳୀ ମହାପୁରୁଷ ବା ଦୁର୍ଦ୍ଦମନୀୟ ପାଷାଣ୍ଡର ବ୍ୟକ୍ତିଗତ ରୁଚି ଓ ଖିଆଲରେ ପରିପୂର୍ଣ୍ଣ ବୋଲି ଭାବିଲେ ମନୁଷ୍ୟ ପକ୍ଷରେ ଏହାର କୌଣସି ମୂଲ୍ୟ ନାହିଁ । ମନୁଷ୍ୟ ପକ୍ଷରେ ମୂଲ୍ୟହୀନ ବୋଲି ଯେ ଏହା ମିଥ୍ୟା ତା ନୁହେଁ; କିନ୍ତୁ ବିବର୍ତ୍ତନଶୀଳ ମନୁଷ୍ୟ ସମାଜ ଇତିହାସର ବୈଜ୍ଞାନିକ

ଘଟଣାବଳୀ, ଯୁଗ ପରିବର୍ତ୍ତନକାରୀ ଶକ୍ତି ସମୂହ, ଅନନୁମିତ ଓ ଅନଭିପ୍ରେତ ପରିସ୍ଥିତି ଜନିତ ଦୁର୍ଘଟଣା ଓ ବ୍ୟକ୍ତିଗତ ଖାମ ଖିଆଲ ଇଚ୍ଛା ଅନିଚ୍ଛା ଯୋଗୁଁ ପରିଚାଳିତ ବୋଲି କହିଲେ ନିହାତି ମିଥ୍ୟା ହେବ। ହଠାତ୍ ଜଣେ ଲୋକ ଏକା ଏକା ଜନଶୂନ୍ୟ ଜଙ୍ଗଲରେ ଗୋଟିଏ ବିରାଟ ଇସ୍ପାତ କାରଖାନା ପ୍ରତିଷ୍ଠା କରିବାକୁ ଭାବିନେଲେ କାରଖାନା ସୃଷ୍ଟି ହୋଇଯିବା ଯେପରି ଅସମ୍ଭବ ପ୍ରଗତିଶୀଳ ମାନବ ସମାଜର ସଙ୍ଗଠିତ ଶ୍ରମଦାନ ଏପରି ଭାବରେ ଦୁର୍ଘଟଣା ଏବଂ ବ୍ୟକ୍ତିଗତ ଇଚ୍ଛା ଯୋଗୁଁ ସମ୍ଭବ ବୋଲି ଭାବିବା ସେପରି ହାସ୍ୟାସ୍ପଦ। ଇତିହାସ ପ୍ରସିଦ୍ଧ ଘଟଣାବଳୀ ପୂର୍ବରୁ ଘଟିଯାଇଥିବା ନାନା ଅବସ୍ଥା ଓ ପାରିପାର୍ଶ୍ୱିକ ପରିସ୍ଥିତି ସମ୍ଭୂତ କାର୍ଯ୍ୟକାରଣ ସୂତ୍ରରେ ଜଡ଼ିତ। ତେଣୁ ଇତିହାସରେ ଆକସ୍ମିକ ଓ ବ୍ୟକ୍ତିଗତ ଇଚ୍ଛାର ପ୍ରଭାବ ଥିଲେ ମଧ୍ୟ କୌଣସି ପ୍ରଧାନ ପରିବର୍ତ୍ତନ ବା ବିପ୍ଳବ କେବଳ ଏହା ସାହାଯ୍ୟରେ ବିଚାର କରିବା ଠିକ୍ ହେବ ନାହିଁ।

ପ୍ରତ୍ୟେକ ଯୁଗର ଲୋକ ପୃଥିବୀର ଯେଉଁ ସ୍ଥାନରେ ଏବଂ ଯେଉଁ ସମୟରେ ଥାଆନ୍ତୁ ପଛକେ, ସେମାନଙ୍କର ଜୀବନ ଯାପନ ପ୍ରଣାଳୀ, ଖାଦ୍ୟଦ୍ରବ୍ୟ ଆହରଣ କରିବା ପଦ୍ଧତି ପ୍ରଭୃତି କେତୋଟି ସାଧାରଣ ବିଷୟରେ ସାମ୍ୟ ଥିବାର ଦେଖାଯାଏ। ସେମାନେ ସମସ୍ତେ ଯନ୍ତ୍ରବତ୍ ଏକ ପ୍ରକାର ବ୍ୟବହାର ନକଲେ ସୁଦ୍ଧା ଏବଂ ଠିକ୍ ଗୋଟିଏ ପ୍ରକାର ସାମାଜିକ ପଦ୍ଧତି ଅନୁସରଣ ନକଲେ ସୁଦ୍ଧା ଏସବୁ ସମ୍ବନ୍ଧରେ କେତୋଟି ସାଧାରଣ ନିୟମ ସହଜରେ ପରିଲକ୍ଷିତ ହୁଏ। ଏହି ସାଧାରଣ ନିୟମ ଗୁଡ଼ିକୁ ଅନୁଧ୍ୟାନ କରି

ଦେଖିଲେ ଆମେ ସହଜରେ ଆଜି କେତେ ପ୍ରକାର ଆସ୍ୱର ବ୍ୟବହାର ଆଶା କରିପାରୁ । ଏପରି ଭାବରେ ପ୍ରତ୍ୟେକ ସାମାଜିକ ସ୍ତରର ଅନ୍ତର୍ନିହିତ ଶକ୍ତି ଓ ଦୁର୍ବଳତା ଧରାହୁଏ ଏବଂ ବାଧକ ଶକ୍ତିର ବଳ ଓ ପରିଣତି ବିଷୟରେ ମଧ୍ୟ ଅନୁମାନ କରାହୁଏ । ପ୍ରସ୍ତର ଯୁଗରୁ ନାନା ସ୍ତର ଅବଲମ୍ବନ କରି ଆମେ ଯୁକ୍ତି ଯୁକ୍ତ ଭାବରେ ଆସି ତାମ୍ର ଓ ଲୌହ ଯୁଗରେ ପହଞ୍ଚିପାରୁ । ଗୋଟିଏ ଯୁଗର ରୀତିନୀତି, ସାମାଜିକ ପଦ୍ଧତି, ଜୀବନ ଯାପନ ପ୍ରଣାଳୀ, କଳା ଚର୍ଚ୍ଚାନ ପ୍ରଭୃତି ସେହି ଯୁଗ ମନୁଷ୍ୟମାନଙ୍କର ଉତ୍ପାଦିକା ଶକ୍ତି, ଉତ୍ପାଦନ ପ୍ରଣାଳୀ ଓ ପ୍ରାକୃତିକ ଜଗତ ଉପରେ ତାର ପ୍ରଭାବ ପ୍ରଭୃତି ସହିତରେ ଅବିଚ୍ଛେଦ୍ୟ ସମ୍ପର୍କ ରହିଛି । ଏପରି ଭାବରେ ପ୍ରତ୍ୟେକ ଯୁଗର ସମସ୍ତ ପ୍ରକାର ପାରିପାର୍ଶ୍ୱିକ ପରିସ୍ଥିତିକୁ ବିଶ୍ଳେଷଣ କରି ତାର ସଂସ୍କୃତି କଳା ପ୍ରଭୃତି ବିଷୟରେ ପ୍ରକୃତ ମତାମତ ଠିକଣା କରି ପାରିବା ଅର୍ଥ ବୈଜ୍ଞାନିକ ପ୍ରଣାଳୀରେ ଐତିହାସିକ ନିୟମ ପ୍ରବର୍ତ୍ତନ କରିବା ଏବଂ ଏପରି ମତାମତ ଦେଶକାଳ ପରିସ୍ଥିତି ନିର୍ବିଶେଷରେ ବାସ୍ତବ ବୋଲି ପ୍ରମାଣିତ ହୋଇଛି । ଆଧୁନିକ ଅତି ଜଟିଳ ସାମାଜିକ ପରିସ୍ଥିତିକୁ ଖୁବ୍ ସୂକ୍ଷ୍ମ ଭାବରେ ବିଶ୍ଳେଷଣ କରି ଦେଖିଲେ ମଧ୍ୟ କେତୋଟି ସାଧାରଣ ନିୟମ ଦୃଷ୍ଟିଗୋଚର ହେଉଛି ଏବଂ ଏହି ନିୟମ-ଗୁଡ଼ିକୁ ଅବଲମ୍ବନ କରି ଭବିଷ୍ୟତ ଫଳାଫଳ ମଧ୍ୟ ଗଣନା କରି ହେଉଛି ଓ ଅନେକ ଗଣନା ସତ୍ୟ ବୋଲି ପ୍ରମାଣିତ ହୋଇ ସାରିଛି । ଏପରି ବହୁ ଘଟଣାରୁ ଗୋଟିଏ ମାତ୍ର ଉଦାହରଣ ସ୍ୱରୂପ ଦିଆଯାଇ ପାରେ । ପ୍ରାୟ ଶହେ ବର୍ଷ ତଳେ କୁହାହୋଇ ଥିଲା ଯେ ପୁଞ୍ଜିବାଦର ପରିଣତି ସାମ୍ରାଜ୍ୟବାଦରେ ଏବଂ ସାମ୍ରାଜ୍ୟ-ବାଦ ଓ ଏକଚାଟିଆ ପୁଞ୍ଜିବାଦର ଫଳ ହେବ ପୃଥିବୀ ଯୁଦ୍ଧ ଏବଂ

ପ୍ରତ୍ୟେକ ପୃଥିବୀ ସ୍ତର ଉପରେ ସାମ୍ରାଜ୍ୟବାଦ ଦୁର୍ବଳ ହୋଇ ଯିବ ଏବଂ ଭାରତ ଦେଶରେ ଭିନ୍ନ ଭିନ୍ନ ପରିସ୍ଥିତି ଅନୁସାରେ ବହୁ ରକମର ସାମାଜିକ ପରିବର୍ତ୍ତନ ଦେଖାଯିବ । ଏ ଭବିଷ୍ୟତ ବାଣୀ ଯେ ଅନେକାଂଶ ସତ ହୋଇଛି ଏଥିରେ ସନ୍ଦେହ ନାହିଁ । ସମାଜ ବିଜ୍ଞାନ ସମ୍ବନ୍ଧୀୟ ଭବିଷ୍ୟତ ବାଣୀରେ ବହୁ ଭୁଲ ଝଟକା ରହିଯିବା ସ୍ୱାଭାବିକ । ତଥାପି ସ୍ୱାଭାବରେ ଯେ ଝଡ଼ର ଜଣାଯାଇ ପାରେ ଏ ବିଷୟରେ ମଧ୍ୟ ସନ୍ଦେହ କରିବା ଉଚିତ ନୁହେଁ । ତାତ୍ତ୍ୱା ମନୁଷ୍ୟର ସାମାଜିକ ଅବସ୍ଥା ଓ ଅନ୍ୟାନ୍ୟ ପରିସ୍ଥିତି ସବୁ ଏତେ ଜଟିଳ ଓ ପ୍ରତ୍ୟେକ ପରିବର୍ତ୍ତନ ପଛରେ ଏତେ ପ୍ରକାର ଶକ୍ତି ସବୁ କାମ କରୁଥାଏ ଯେ ସେସବୁ ଯଥାଯଥ ଭାବରେ ବିଶ୍ଳେଷଣ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ । ତେଣୁ ମୋଟାମୋଟି ଭାବରେ କେତେଗୁଡ଼ିଏ ସାମାଜିକ ନିୟମ ବା ଐତିହାସିକ ଧାରା ବିଷୟରେ ଜ୍ଞାନ ଲାଭ କରିପାରିଲେ ସୁଦ୍ଧା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କିପରି ଭାବରେ ମନୁଷ୍ୟ ବା ସେମାନଙ୍କର ଅନୁଷ୍ଠାନ ସବୁ କାମ କରିବେ ସେ ବିଷୟରେ ଏକାବେଳକେ ଠିକ ଭାବରେ ଗଣନା କରି କହିବା କଷ୍ଟସାଧ୍ୟ । ଦଶବର୍ଷପରେ ଆମ ଦେଶର ମୋଟାମୋଟି ଅବସ୍ଥା କଣ ହୋଇ-ପାରେ ସେ ବିଷୟରେ କିଛି କୁହାଯାଇ ପାରେ, କିନ୍ତୁ ଅମୁକ ଧର୍ମଘଟ କିମ୍ବା ଅମୁକ ଆନ୍ଦୋଳନରେ କଣ ଘଟିବ ତାହା କହିବା ସବୁ ସମୟରେ ସମ୍ଭବ ନ ହୋଇପାରେ ।

× × ×

—ଦୁଇ—

ତଥ ଇତିହାସ ନିୟମ ଦ୍ୱାରା ପରିଚାଳିତ—ଐତିହାସିକ ଘଟଣାବଳୀର ଧାରାବାହିକ କାର୍ଯ୍ୟକାରଣ ସମ୍ପର୍କ ରହିଛି—କୌଣସି ସାମାଜିକ ପରିବର୍ତ୍ତନ ବହୁ ପ୍ରକାର ଅର୍ଥନୈତିକ, ଧର୍ମଗତ, ଜାତିଗତ ପ୍ରଭୃତି ପରିସ୍ଥିତିରେ ସମଷ୍ଟିଗତ ଘଟଣା—ତାହେଲେ ପ୍ରତିଭାଶାଳୀ ଐତିହାସିକ ବ୍ୟକ୍ତିର ପ୍ରଭାବ କେତେ ଦୂର ? ଏହା କଣ ଠିକ୍ ଯେ ଗୋଟିଏ ଦେଶର ଉତ୍‌ଥାନ ପତନ ବା ଯୁଗଭାଗପୋଗୀ ବିପ୍ଳବ କୌଣସି ଜଣେ ନେତା ଯୋଗୁଁ ସମ୍ଭବ ହୁଏ ଏବଂ ସେ ପ୍ରତିଭାଶାଳୀ ନେତା ନ ଥିଲେ ତାହା କୌଣସି ମତେ ସମ୍ଭବ ହୋଇ ନ ଥାନ୍ତା । ଅନେକେ ବିଶ୍ୱାସ କରନ୍ତି, ଯେ ଜଣେ ଜଣେ ଖଣ୍ଡଜନ୍ମାଙ୍କୁ ଦେଶକୁ ଉଠାଇ ଆଣନ୍ତି କିମ୍ବା ଜ୍ୱଳନ୍ତ ଅବନତିର ଅତଳ ଗହ୍ୱରକୁ ଠେଲି ଆଣନ୍ତି । କିନ୍ତୁ ସବୁ ପ୍ରକାର ପରିସ୍ଥିତିକୁ ବିଶ୍ଳେଷଣ କଲେ ତାହା ସତ ନୁହେଁ । ଇତିହାସରେ ପ୍ରତିଭାଶାଳୀ ଲୋକଙ୍କର ସ୍ଥାନ ଅଛି ସତ; କିନ୍ତୁ ସେମାନଙ୍କର ଖାମଖିଆଲି ମନୋଭାବ ଓ ବ୍ୟକ୍ତିଗତ ରୁଚି ଅନୁଭୂତି ଯୋଗୁ ଦେଶର ପରିସ୍ଥିତିରେ ବିପ୍ଳବାତ୍ମକ ପରିବର୍ତ୍ତନ ଆସେ ନାହିଁ । ଦୂରଦର୍ଶୀ ନେତାମାନଙ୍କର ଜନସାଧାରଣଙ୍କ ତୁଳନାରେ ବହୁତ ପ୍ରଶଂସନୀୟ ଗୁଣ ଥାଏ ଏବଂ ସେମାନେ ସମାଜର ପ୍ରଚଳିତ ନିୟମବନ୍ଧନର କାର୍ଯ୍ୟକାରୀ ଶକ୍ତି, ପାରସ୍ପରିକ ସମ୍ପର୍କ, ଅତୀତ ବର୍ତ୍ତମାନ ଓ ଭବିଷ୍ୟତରେ ଏହାର ତାତ୍ପର୍ଯ୍ୟ ପ୍ରଭୃତି ବିଷୟରେ ଅପେକ୍ଷାକୃତ ସଜାଗ ଓ ଜାଗ୍ରତ ଥାଆନ୍ତି; ଅର୍ଥାତ ଉନ୍ନତ ଜ୍ଞାନ ଶକ୍ତି ଓ ବାସ୍ତବ ଅଭିଜ୍ଞତା ଦ୍ୱାରା ବର୍ତ୍ତମାନର ସାମାଜିକ ଶକ୍ତିଗୁଡ଼ିକର ମୂଳକାରଣ ଅତୀତରୁ ଖୋଜି ବାହାର କରିପାରନ୍ତି ଏବଂ କ

ରୂପାନ୍ତରେ ଏସବୁ ଶକ୍ତିକୁ ପରିଚାଳିତ କଲେ କି ପ୍ରକାର ଫଳାଫଳ ହେବ ଏତତ୍ସମ୍ପର୍କରେ ସେମାନଙ୍କର ଦୂରଦର୍ଶିତା ଥାଏ। ଯେ ଯେତେବେଶି ଦୂରଦର୍ଶିତା ଦେଖାଏ ଏବଂ ଯେତେ ଭଲ ଭାବରେ ବୈଜ୍ଞାନିକ ବିଶ୍ଳେଷଣକରି ବିଭିନ୍ନ ସାମାଜିକ ଶକ୍ତିର ଗତି, ସ୍ଥିତି ପ୍ରକୃତି, ଅବସ୍ଥିତି, କାର୍ଯ୍ୟକାରଣ ପ୍ରଭୃତି ମଧ୍ୟରେ ସ୍ୱକ୍ରିୟଯୁକ୍ତ ସମ୍ପର୍କ ଦେଖିପାରେ, ସେ ସେତେ ବେଶି କୃତକାର୍ଯ୍ୟ ହୋଇପାରେ। ଏହାର ବ୍ୟତିକ୍ରମ ଯୋଗୁଁ ଅନେକେ ଖୁବ୍ ବଡ ବଡ ଭଲ କରିଥାଆନ୍ତି ଏବଂ ଏହି ଭଲ ସବୁ ମାରାତ୍ମକ ହେଲେ ସୁଦ୍ଧା ଏବ କୌଣସି ଅଭୋଳନ ସେଥିପାଇଁ ପଲେଇଗଲେ ସୁଦ୍ଧା ଚିରକାଳପାଇଁ ଲୋପପାଇ ଯାଏନା। ଏମାନେ ସମାଜର ସାଧାରଣ ଲୋକଙ୍କଠାରୁ ବେଶି କଷ୍ଟସହିଷ୍ଣୁ, ଦୂରଦର୍ଶୀ ଏବଂ ବୁଦ୍ଧିମାନ; କିନ୍ତୁ ନୂତନ ସମାଜ ବା ସାମାଜିକ ଶକ୍ତିର ସୃଷ୍ଟି କରିପାରନ୍ତି— ଅନ୍ୟମାନଙ୍କର ଚେତନାଶକ୍ତି ଜାଗ୍ରତ କରାଇ ବିଭିନ୍ନ ଶକ୍ତି ସମୂହକୁ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସଫଳତା ସହିତ ପରିଚାଳିତ କରାଇ ପାରିଲେ ଇଚ୍ଛାମତ ଫଳ ପାଇ ପାରନ୍ତି। ଏପରି ମଧ୍ୟ ଦେଖାଯାଏ ଯେ କେତେକ ଅତି ପ୍ରଭାବଶାଳୀ ନେତା ସେମାନଙ୍କର ତ୍ୟାଗ ଓ ଆଦର୍ଶ ବଳରେ ଲୋକମାନଙ୍କୁ ପ୍ରଭାବିତ କରି ସେମାନଙ୍କର ବହୁ ଉପକାର ସାଧନ କରନ୍ତି ଏବଂ ତା ସାଙ୍ଗେ ସାଙ୍ଗେ ଆଉ କେତେ ଗୁରୁତର ଭଲ ଧାରଣା ବା ସାମାଜିକ ପରିସ୍ଥିତିର ଅବୈଜ୍ଞାନିକ ବିଶ୍ଳେଷଣ ଯୋଗୁ ଅନେକ କ୍ଷେତ୍ରରେ ଅକୃତକାର୍ଯ୍ୟ ମଧ୍ୟ ହୁଅନ୍ତି। ସେମାନେ ବଞ୍ଚିଥିଲା ଯାଏଁ ତାଙ୍କର କେତେକ ଶିଷ୍ୟ ତାଙ୍କୁ ଆଦର୍ଶ ବୋଲି ଗ୍ରହଣ କରିଥାଆନ୍ତି ସତ; କିନ୍ତୁ ତାଙ୍କର ମୃତ୍ୟୁପରେ ସେ ଆଦର୍ଶ ସମସ୍ତେ ଅତିଶୀଘ୍ର ଭୁଲି ଯାଆନ୍ତି। ତେଣୁ କୌଣସି ଐତିହାସିକ ମହାପୁରୁଷର ମତାମତର ସତ୍ୟତା ସାମାଜିକ କାର୍ଯ୍ୟକ୍ଷେତ୍ରରୁ

ପ୍ରମାଣିତ କରିଦେବ । ଯେଉଁ ନୀତି କାର୍ଯ୍ୟକାରୀ ହୋଇ ପାରିବ, ତାହା ଠିକ୍ ଏବଂ ଯାହା ଖରାପ ପ୍ରତିକ୍ରିୟା ସୃଷ୍ଟି କରିବ ବା କୌଣସି କ୍ଷେତ୍ରରେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ, ତାହା ସେହି ପରିସ୍ଥିତିରେ ଭୁଲ୍ ବୋଲି ଧରିବାକୁ ହେବ । ପ୍ରକୃତ କାର୍ଯ୍ୟକାରୀ କ୍ଷେତ୍ରହିଁ ପ୍ରତ୍ୟେକ ଆଦର୍ଶର ଉପଯୁକ୍ତ ପରୀକ୍ଷାସ୍ଥଳ । ତା ନ ହେଲେ ଯୁକ୍ତିବଳରେ ତ ବହୁ ନୀତି ପ୍ରମାଣିତ କରିହେବ ଏବଂ ଏପରି ନୀତି ଅତି ଉଚ୍ଚ ସ୍ତରର ବୋଲି ମଧ୍ୟ ସ୍ୱୀକୃତ ହୋଇପାରେ । କିନ୍ତୁ ସେ ସବୁର ଫଳପ୍ରଦାନକାରୀ ଶକ୍ତି ନ ଥିଲେ ଏବଂ କୌଣସି କ୍ଷେତ୍ରରେ କାର୍ଯ୍ୟକାରୀ ହୋଇ ନ ପାରିଲେ ତାର ସାମାଜିକ ମୂଲ୍ୟ କିଛି ନାହିଁ । ବରଂ ଏହା ଅସାଧ୍ୟ ହୋଇଥିବାରୁ ଏବଂ ଉପସ୍ଥିତ ପରିସ୍ଥିତି ସହିତ ଏହାର କୌଣସି ବାସ୍ତବ ସମ୍ପର୍କ ନ ଥିବାରୁ ସାଧାରଣ ଲୋକଙ୍କ ପକ୍ଷରେ ଏହା ବଡ଼ ରହସ୍ୟପୂର୍ଣ୍ଣ ହୋଇଯାଏ ଓ କେତେକ ତଥାକଥିତ ଚତୁର ନେତା ଏହା ମାଧ୍ୟମରେ ଲୋକମାନଙ୍କୁ ଭୁଲାଇ ନିଜ ସ୍ୱାର୍ଥ ସିଦ୍ଧିରେ ଲାଗିପଡ଼ନ୍ତି ।

× ×

ମହାତ୍ମାଗାନ୍ଧି ଏକାଧାରରେ ଦାର୍ଶନିକ, ନେତା, ରାଜନୀତିଜ୍ଞ, ସମାଜ ସଂସ୍କାରକ ଥିଲେ । ତାଙ୍କର ସ୍ୱାର୍ଥତ୍ୟାଗ ଓ ଆଦର୍ଶ ଅତୁଳନୀୟ । ଏତେ ବଡ଼ ମହାପୁରୁଷ ପୃଥିବୀର ରାଜନୀତି କ୍ଷେତ୍ରରେ ବଡ଼ ବିରଳ । ଅନେକ ଧର୍ମବିଶ୍ୱାସୀ ତାଙ୍କୁ ଭଗବାନଙ୍କ ଅବତାର ବୋଲି ମଧ୍ୟ କହି ଥାଆନ୍ତି । ତା ଅର୍ଥ ସେ କୋଟି କୋଟି ଲୋକଙ୍କ ଆଦର୍ଶର ପ୍ରତିମୂର୍ତ୍ତି ରୂପେ ପୂଜା ପାଉଥିଲେ । ଭାରତୀୟଙ୍କୁ ସେ ଯେପରି ଭାବରେ ଜାଗ୍ରତ କରାଇ ପାରିଥିଲେ, ତାହା କେହି ଭୁଲିପାରିବେ ନାହିଁ; କିନ୍ତୁ ସେ ଜନ୍ମଗ୍ରହଣ କରି ନ ଥିଲେ ବା, ରାଜନୀତିରେ ଯୋଗଦେଇ ନ ଥିଲେ ଭାରତ ସ୍ୱାଧୀନତା

ପ୍ରକାଶ ନ ଥାନ୍ତା ବୋଲି କହିବା ମଧ୍ୟ ଭୁଲ । ଭାରତରେ ଆନ୍ଦୋଳନ ଅନ୍ୟପ୍ରକାର ହୋଇ ଥାଆନ୍ତା ସତ, କିନ୍ତୁ ସ୍ୱାଧୀନତା ପାଇଁ ସେ ବ୍ୟାପକ ଆନ୍ଦୋଳନ ହୋଇଥାନ୍ତା ଏଥିରେ ସନ୍ଦେହ ନାହିଁ—ତାଙ୍କ ଅଭାବରେ ଭାରତ ଚିରକାଳ ପାଇଁ ପରାଧୀନ ହୋଇ ରହି ନଥାନ୍ତା । ସେ ଭାରତୀୟମାନଙ୍କର ସଚେତ ବା ଅଚେତ ମନରେ ଥିବା ସ୍ୱାଧୀନତା ଲାଭକରିବାର ବଳବତୀ ଇଚ୍ଛା ଶକ୍ତିକୁ ଜାଗ୍ରତ କରାଇ ପାରିଥିଲେ ଏବଂ ଏହି ଶକ୍ତିକୁ ସେମାନଙ୍କ ସାହାଯ୍ୟରେ ଆଗକୁ ଅଗ୍ରସର କରାଇ ପାରିଥିଲେ । ତାଙ୍କର ଆଦର୍ଶ ଓ ପ୍ରବର୍ତ୍ତିତ ପନ୍ଥା କେତେକ କ୍ଷେତ୍ରରେ ସଫଳତାର ସହିତ କାର୍ଯ୍ୟକାରୀ ହୋଇଥିଲେ ମଧ୍ୟ ଆଉ କେତେକ କ୍ଷେତ୍ରରେ ଭୟଙ୍କର ଭାବରେ ପରାସ୍ତ ହୋଇଥିଲା । ଗାନ୍ଧୀଙ୍କର ଅହିଂସା ନୀତି, ଅଖଣ୍ଡ ଭାରତ ପରିକଳ୍ପନା ଓ ତାଙ୍କର ଅତିପ୍ରିୟ ଅର୍ଥନୀତି ଏବେ ବେଳକୁ ପରିତ୍ୟକ୍ତ ହୋଇ ସାରିଛି । ଗାନ୍ଧୀ ଅର୍ଥନୀତି ସାଧାରଣ ଲୋକେ କାହିଁକି, ତାଙ୍କର ଅତି ପ୍ରିୟ ଶିଷ୍ୟମାନେ ମଧ୍ୟ ତାଙ୍କର ମରିବାର କେତେବର୍ଷ ଭିତରେ ପୂରାପୂରି ଭୁଲି ଗଲେଣି । ଏତେବଡ଼ ନେତାଙ୍କର ମୂଳ ଅର୍ଥନୀତି ଏତେ ଶୀଘ୍ର ଲୋକମାନଙ୍କ ମନରୁ ମୂଳପୋଛ ହୋଇଯିବା କଣ କମ ପରାଭବ ?

ତାହାପରେ ଲୋକପ୍ରିୟ ନେତାଙ୍କର ମୂଳ ଅର୍ଥନୀତି ଏପରି ଭାବରେ ଲୋପପାଇ ଯିବାର କାରଣ କଣ ? ବର୍ତ୍ତମାନ ଯୁଗକୁ ଯନ୍ତ୍ରଯୁଗ ବୋଲି କୁହାଯାଇ ପାରେ । ଏହି ଯୁଗର କେତେଗୁଡ଼ିଏ ସାମାଜିକଧାରା ଓ ବୈଶିଷ୍ଟ୍ୟ ଗୁଣ ରହିଛି । ଯୁଗର ପ୍ରଧାନ ପ୍ରବାହର ଗତିରୋଧ କରି ତାକୁ ଦୂରକରି ଲୋପ କରି ଦେଇ ତା ସ୍ଥାନରେ ଅତୀତ ଯୁଗର ସାମାଜିକ ପ୍ରବାହକୁ ପୁନଃ ପ୍ରବାହିତ କରିବା ଅସମ୍ଭବ । ପ୍ରତ୍ୟେକ ଯୁଗର କେତେଗୁଡ଼ିଏ ବୈଶିଷ୍ଟ୍ୟ

ସାମାଜିକ ଓ ଅର୍ଥନୈତିକ ଶକ୍ତି ଅଛି—ସେ ଯେତେବଡ଼ ପ୍ରଭାବଶାଳୀ ବ୍ୟକ୍ତି ହେଉନା କାହିଁକି ଏହି ପ୍ରଧାନ ଶକ୍ତିଗୁଡ଼ିକୁ ଅଗ୍ରାହ୍ୟ କରି ଅନ୍ୟ ଗୋଟିଏ ଯୁଗର ଆଦର୍ଶକୁ ଆଦର୍ଶ ରୂପେ ଗ୍ରହଣ କଲେ ସେ ନିଶ୍ଚୟ ପରାସ୍ତ ହୋଇଯିବ । ତେଣୁ ଯେ କୌଣସି ଐତିହାସିକ ମହାପୁରୁଷଙ୍କୁ ଯୁଗର ପ୍ରଧାନ ପ୍ରବାହକୁ ମାନିନେବାକୁ ହେବ । ଏହି ପ୍ରବାହର ଗତି ମନ୍ଥର କିମ୍ବା ଦୋଷଯୁକ୍ତ ଥିଲେ ତାକୁ ଦ୍ରୁତତର କରାଇବା କିମ୍ବା ପଙ୍କୋଦ୍ଧାର କରି ତାକୁ ନିର୍ମଳ କରିବା ହେଉଛି ଏମାନଙ୍କର ପ୍ରଧାନ କାମ । ମହାତ୍ମା ଗାନ୍ଧୀଙ୍କର ଏଇଠାରେ ହେଲା ଭୁଲ୍ । ତାଙ୍କର ଅର୍ଥନୀତିର ଆଦର୍ଶ ଅତି ଉଚ୍ଚଧରଣର ହୋଇଥାରେ, କିନ୍ତୁ ବର୍ତ୍ତମାନ ଯୁଗଧର୍ମ ସହିତ ତାର କୌଣସି ସାମଞ୍ଜସ୍ୟ ନାହିଁ । ତେଣୁ ସେ ଏଥିରେ ପରାସ୍ତ ହୋଇଗଲେ । ସେହିପରି ଅଖଣ୍ଡ ଭାରତ ପ୍ରତିଷ୍ଠା କଳ୍ପନା ବାସ୍ତବରେ ପରିଣତ ହୋଇପାରିଲା ନାହିଁ । ଭାରତର ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ଯାହା, ଏଥିରେ ଗାନ୍ଧୀଙ୍କ ଉପାୟରେ ଅଖଣ୍ଡ ଭାରତ ସ୍ଥାପନ ସମ୍ଭବ ହୋଇପାରି ନ ଥାନ୍ତା । ଏଥିଲାଗି ଜିନ୍ନାଙ୍କୁ ଦୋଷଦେଇ ଲାଭ ନାହିଁ । ଜିନ୍ନାଙ୍କୁ ଗାନ୍ଧୀଙ୍କ ପରି ଉଚ୍ଚ ଧରଣର ଜନନେତା ଓ ତ୍ୟାଗୀ ବୋଲି କେହେତେକ ସ୍ୱୀକାର ନ କରୁଥିଲେ ମଧ୍ୟ ଭାରତକୁ ଦୁଇ ଭାଗ କରିବାରେ ସେ ଜୟୀ ହେଲେ । ଗାନ୍ଧୀଙ୍କର ହେଲା ପରାଜୟ । ତାର କାରଣ ହେଉଛି ଜିନ୍ନା ଏପରି ଗୋଟିଏ ସାମାଜିକ ପ୍ରବାହ ଉପରେ ଯାଇ ବସିଲେ ଯେ ଏହାର ଶକ୍ତି ତାଙ୍କୁ କାଙ୍କ୍ଷିତ ସ୍ଥାନରେ ନେଇ ପହଞ୍ଚାଇ ଦେଇ ପାରିଲା । ଅନେକ ପ୍ରମାଣ ମିଳେ ଯେ ଜିନ୍ନା ପ୍ରକୃତରେ ଇଚ୍ଛା ନ ଥିଲେ ପାକିସ୍ତାନ କଳ୍ପନା ବାସ୍ତବରେ ପରିଣତ ହୋଇ ଯାଉ । ସେ ସମାଜର ଗୋଟିଏ ଶକ୍ତିର ଆଶ୍ରୟ ନେଇ ଥିଲେ ମାତ୍ର—କିନ୍ତୁ ପରିସ୍ଥିତି ଏପରି ହୋଇ ଆସିଲା ଯେ ସେ

କରିଥିଲେ । ବଙ୍ଗଳାରେ ଯେଉଁ ଅରାଜକତା ଦେଖାଗଲା, ସେଥିଲାଗି ମୁସ୍‌ଲିମ୍ ଲିଗ୍ ନେତାଙ୍କ ଦାୟୀ, ସେଠାକାର ଅର୍ଥନୈତିକ ପରିସ୍ଥିତି ତାଠାରୁ ବେଶି ଦାୟୀ । ହିନ୍ଦୁ ମୁସଲମାନଙ୍କ ଭିତରେ ଅର୍ଥନୈତିକ ଓ ସାମାଜିକ ସମ୍ପର୍କ ଯେପରି ଖରାପ ଥିଲା, ସେପରି କ୍ଷେତ୍ରରେ ଯେ କୌଣସି ଚତୁର ରାଜନୈତିକ ତାର ସୁବିଧା ନେଇ ପାରି ଥାଆନ୍ତା । ତେଣୁ ଯେଉଁଠାରେ ବିପ୍ଳବ ସୃଷ୍ଟି କରିବା ସହଜ ଓ ସେଥିପାଇଁ ଯଥେଷ୍ଟ ସୁବିଧା ଥିଲା—ଜିନ୍ନା ତାର ସୁବିଧା ନେଇଥିଲେ । ତାର ସୁବିଧା ନେଇଥାନ୍ତେ ଅନ୍ୟ ରାଜନୀତିକ ଦଳ ଆସିବା ପୂର୍ବରୁ ଜିନ୍ନା ଆସି ପହଞ୍ଚିଗଲେ । ତେଣୁ ଜିନ୍ନାଙ୍କ ବୁଦ୍ଧି ଓ ଶକ୍ତିର ଅପାରଗତା ଅପେକ୍ଷା ପରିସ୍ଥିତିର ଶକ୍ତି ଅଧିକ ହେଲା । ଯେ ନେତା ଏହାର ସୁବିଧା ନେଇ ପାରିଲା, ସେ ହେଲା ଜୟୀ ।

ତା ପରେ ଜିନ୍ନା ହେଲେ ପାକିସ୍ତାନର ଜନ୍ମଦାତା ଓ ଅଦ୍ୱିତୀୟ ନେତା । ତାଙ୍କ ସମାନଧର୍ମୀ ହେବା ଦୂରେ ଥାଉ; ତାଙ୍କର ବୁଦ୍ଧି, ବିଚକ୍ଷଣତା ଓ ରାଜନୈତିକ ଅଭିଜ୍ଞତା ତୁଳନାରେ ଦ୍ୱିତୀୟ ତୃତୀୟ ସ୍ଥାନ ଅଧିକାର କରିବା ପାଇଁ ମଧ୍ୟ ପାକିସ୍ତାନରେ କେହି ନ ଥିଲେ । ସମସ୍ତେ ଭାବୁଥିଲେ ଯେ ଜିନ୍ନାଙ୍କ ମୃତ୍ୟୁପରେ ପାକିସ୍ତାନ ଆଉ ତିଷ୍ଠି ହୋଇ ପାରିବ ନାହିଁ । କିନ୍ତୁ କଣ ହେଲା ? ସେ ଅଳ୍ପ ସମୟ ଭିତରେ ମରିଗଲେ, ତଥାପି ତାଙ୍କ ମୃତ୍ୟୁ ଯୋଗୁଁ ପାକିସ୍ତାନରେ ନ ଏପରି କୌଣସି ବିଭ୍ରାଟ ଘଟିଲା ନାହିଁ । ତା ଅର୍ଥ ବ୍ୟକ୍ତିବିଶେଷ ଅପେକ୍ଷା ସାମାଜିକ ଶକ୍ତି ଓ ଅନୁଷ୍ଠାନ ସମୂହର ବଳ ବେଶି—ଯାହା ବଳରେ ସେ ଜିତିଲେ; ସେହି ସାମାଜିକ ଶକ୍ତି ଓ ଅନୁଷ୍ଠାନ ବଳରେ ପାକିସ୍ତାନ ବ୍ଳଞ୍ଚିପାରିଲା ।

ଗାନ୍ଧୀ ନୈତିକ ଆଦର୍ଶକୁ ରାଜନୈତିକ ଓ ଅର୍ଥନୈତିକ ଆଦର୍ଶଠାରୁ ବହୁତ ଉଚ୍ଚସ୍ଥାନ ଦେଇଥିଲେ । ତାଙ୍କର ସମସ୍ତ ପ୍ରଚାର, ସମସ୍ତ ଆନ୍ଦୋଳନ ପଛରେ ଏହି ନୈତିକ ଆଦର୍ଶ ରହିଥିଲା । କିନ୍ତୁ ଫଳ କଣ ହେଲା ? ସମାଜର ବର୍ତ୍ତମାନ ପରିସ୍ଥିତି ଓ ଶ୍ରେଣୀଗତ ଶକ୍ତିର ପରସ୍ପର ସମ୍ପର୍କର ମୌଳିକ ପରିବର୍ତ୍ତନ ନ ହେବାରୁ ତାଙ୍କର ନୀତିଗତ ପ୍ରଚାର ପ୍ରବଳଭାବରେ ବ୍ୟର୍ଥହେଲା—ତାଙ୍କର ଜୀବଦ୍ଦଶାରେ ସ୍ୱାଧୀନ ଭାରତରେ ଲାଞ୍ଚ, କଳାବଜାର ପ୍ରଭୃତି ଦୁର୍ନୀତି ମାଡ଼ିଗଲା ଏବଂ ବର୍ତ୍ତମାନ ସାରା ସାମାଜିକ ଜୀବନକୁ ଏହା କଳୁଷିତ କରି ଦେବାରେ ବସିଛି । ଏପରିକି ତାଙ୍କର କେତେକ ଶିଷ୍ୟ ମଧ୍ୟ ଏ ପ୍ରକାର ଦୁର୍ନୀତି ଭିତରେ ବୁଡ଼ି ରହିଅଛନ୍ତି । ଏହା ଯେ କୌଣସି କାରଣରୁ ହେଉନା କାହିଁକି, ତାଙ୍କର ନୈତିକ ଆଦର୍ଶର ଯେ ପରାଭବ ହେଲା ଏଥିରେ ସନ୍ଦେହ ନାହିଁ । ସେ ଅତି ଉଚ୍ଚ ନୈତିକ ଆଦର୍ଶ ପ୍ରଚାର କଲେ ସତ, କିନ୍ତୁ ଉପଯୁକ୍ତ ପ୍ରଣାଳୀରେ ଏହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ; ଅର୍ଥାତ୍ ବର୍ତ୍ତମାନର ସାମାଜିକ ଜୀବନ ସାଧାରଣ ପରିସ୍ଥିତି ଓ ଅର୍ଥନୈତିକ ସମ୍ପର୍କ ଯେପରି, ସେଥିରେ ତାଙ୍କର ରାମରାଜ୍ୟ କଳ୍ପନାକୁ କାର୍ଯ୍ୟକାରୀ କରିବାକୁହେଲେ ଅନ୍ୟ ପନ୍ଥାର ଦରକାର ଥିଲା । ସେ କି ପ୍ରକାର ପନ୍ଥା, ତାର ଆଲୋଚନାର ସ୍ଥାନ ଏ ନୁହେଁ—ଏହା ମତବାଦ ରାଜନୈତିକ ମାନଙ୍କର ଏହା ବିଚାର କରିବାର କଥା । କିନ୍ତୁ ବିଶ୍ଳେଷଣକରି ଏତିକି ମାତ୍ର ବୁଝାପାଇ ପାରେ ଯେ, ବର୍ତ୍ତମାନ ପରିସ୍ଥିତିରେ ଗାନ୍ଧୀପନ୍ଥା କାର୍ଯ୍ୟକାରୀ ହୋଇ ପାରୁନାହିଁ ବା ହେବାର ମଧ୍ୟ କୌଣସି ସମ୍ଭାବନା ନାହିଁ ।

ପ୍ରଥମ ମହାଯୁଦ୍ଧ ପରେ ଜର୍ମାନୀର ଅବସ୍ଥା ବଡ଼ ଖରାପ ହୋଇ ଯାଇଥିଲା—୧୯୩୦ ବେଳକୁ ବେକାର ସମସ୍ୟା

ସୁଷମ ଆକାର ଧାରଣ କରିଥିଲା । ଯୁଦ୍ଧରେ ହାରି ମାତ୍ର ଜର୍ମାନ ଜାତି ହୀନମନ୍ୟ ଓ ଦୁର୍ବଳ ହୋଇ ଆସୁଥିଲା—ଆତ୍ମଧିକ୍କାର ସହିତ ପ୍ରତିଶୋଧ ନେବାର ଇଚ୍ଛା ମଧ୍ୟ ବଳବତ୍ତର ଥିଲା । ଠିକ ଏହି ମନୋବୃତ୍ତିର ସୁଯୋଗ ନେଇ ହିଟଲର ତାଙ୍କର ଉଗ୍ର ଜର୍ମାନ୍ ଜାତୀୟତାବାଦ ଲୋକମାନଙ୍କ ମନରେ ଆଣିଦେଲେ—ବେକାରଙ୍କୁ କାମ ଯୋଗାଇ ଦେଲେ । ଯେଉଁ ଶତ୍ରୁପକ୍ଷ ଜର୍ମାନୀର ପରାଜୟ ଦେଇଥିଲେ, ସେମାନଙ୍କ ପ୍ରତି ଯେଉଁ ଉଗ୍ର ଘୃଣା ଓ ପ୍ରତିଶୋଧ, ପ୍ରତ୍ୟେକ ଜର୍ମାନ ଲୋକର ମନରେ ଥିଲା ତାକୁ ନାନା ଉପାୟରେ ଜାଗ୍ରତ କରିଦେଲେ । ଏହି ସମସ୍ତ ସାମାଜିକ ଶକ୍ତିକୁ ଏକମୁଖୀ କରିବାରେହିଁ ହିଟଲର୍ ଙ୍କର ବାହାଦୁରୀ । ପ୍ରକୃତରେ ଯାହା ଅବସ୍ଥା ଥିଲା, ତାର ସୁବିଧା ନେଲେ—ତାଙ୍କର ଗଣନା ଅନୁସାରେ ଅନେକ ଘଟଣା ଘଟିଗଲା—ଦୁର୍ବଳ ସାମାଜ୍ୟବାଦୀ ଇଂଲଣ୍ଡ ଓ ଅନ୍ୟାନ୍ୟ ପୁଞ୍ଜିପତି ଦେଶମାନଙ୍କ ଶକ୍ତି ଏପରି ଚରମ ସୀମାରେ ପହଞ୍ଚିଥିବା ଜାଣି ଜର୍ମାନୀ, ଫାସିଷ୍ଟ ଇଟାଲି ଓ ଜାପାନ ପକ୍ଷରେ ପରାସ୍ତ କରିବା ସହଜ ବୋଲି ମଧ୍ୟ ସେ କଳ୍ପନା କରିଥିଲେ । ସାମ୍ୟବାଦୀ ରୁଷିଆର ଜାତୀୟ ପ୍ରେରଣା ଓ ନୂତନ ପ୍ରକାର ସାମାଜିକ ଶକ୍ତି ବିଷୟରେ ସେ ସଚେତ ହୋଇପାରି ନଥିଲେ—ତେଣୁ ଘଟଣା ଶେଷରେ ଏହି ନୂତନ ଶକ୍ତି ତାଙ୍କର ସମସ୍ତ ଗଣନାକୁ ବ୍ୟର୍ଥ କରିଦେଲା । ତେଣୁ ଜର୍ମାନୀର ପରାସ୍ତ ଆକସ୍ମିକ ଦୁର୍ଘଟଣା ହୋଇନୁ ନୁହେ । ରୁଷିଆର ନୂତନ ସାମାଜିକ ଜୀବନ ଏପରି ଭାବରେ ଜାଗ୍ରତ ଓ ସଂଗଠିତ ହୋଇଥିଲା ଏବଂ ପୁଞ୍ଜିବାଦ ଭଳିଆ ଶକ୍ତି ପକ୍ଷରେ ପ୍ରଗତନ ଏପରି ଭାବରେ ହୋଇପାରିଲା ଯେ ହିଟଲରଙ୍କ ଫାସିଷ୍ଟ ବାହିନୀ ସେଥିରେ ପରାସ୍ତ

ହୋଇପାରିଥିବ । ହିଟଲରଙ୍କର ସାମରିକ ଶକ୍ତି ଛଡ଼ା ତାଙ୍କର ରାଜନୀତି, ଅର୍ଥନୀତି, ଜାତୀୟତା ପ୍ରଭୃତିର କୃତ୍ରିମ ଉପର ପକ୍ଷକୁ ତାଙ୍କ ସଫଳତାରେ ବହୁତ ସାହାଯ୍ୟ କରିଥିବ । କିନ୍ତୁ ଲେନିନ୍ ଷ୍ଟାଲିନଙ୍କର ମତ ହିଟଲର ମତଠାରୁ ସମ୍ପୂର୍ଣ୍ଣ ଅଲଗା ଥିବାରୁ ଏବଂ ସେ ମତ ରୁଷିଆର ତତ୍କାଳୀନ ସାମାଜିକ ସଂଗଠନ ଓ ଧାର୍ମିକ ପରିସ୍ଥିତି ଅନୁସାରେ ବିଚାର ସଙ୍ଗତ ପରିସ୍ଥିତିର ହୋଇଥିବାରୁ କୃତକାର୍ଯ୍ୟ ହୋଇପାରିଥିଲେ । ଅଥଚ ଟ୍ରଟ୍ସ୍କିଙ୍କର ବିଶ୍ୱ ବିପ୍ଳବ କଳ୍ପନା ସେହି ପରିସ୍ଥିତିରେ କୃତକାର୍ଯ୍ୟ ହୋଇପାରି ନଥିଲା । ତେଣୁ ବ୍ୟକ୍ତି ବିଶେଷର ଦୂରଦର୍ଶିତା ବୈଜ୍ଞାନିକ ପ୍ରଣାଳୀରେ ବିଭିନ୍ନ ସାମାଜିକ ଶକ୍ତି ସମୂହର ବିଶ୍ଳେଷଣ ଓ ଦେଶକାଳ ପାତ୍ର ଓ ପରିସ୍ଥିତି ଅନୁସାରେ ସେସବୁର ପରିଚାଳନା କ୍ଷମତାରେହିଁ ସଫଳତା ନିର୍ଭର କରିଥାଏ—ବିଦ୍ୟା, ବୁଦ୍ଧି, ବ୍ୟକ୍ତିତ୍ୱ, ଉଚ୍ଚ ଆଦର୍ଶ, ଜନପ୍ରିୟତା ପ୍ରଭୃତି ବ୍ୟକ୍ତିଗତ ଗୁଣ ଉପରେ କେବଳ ନୁହେଁ । ଅବଶ୍ୟ ଏସବୁ ଗୁଣ ନ ଥିଲେ କୌଣସି ନେତା ଉପଯୁକ୍ତ ଭାବରେ ବିପ୍ଳବକୁ କାର୍ଯ୍ୟକାରୀ କରିପାରିବ ନାହିଁ; କିନ୍ତୁ ଏସବୁ ଗୁଣ ଥାଇ ମଧ୍ୟ ଯଦି କେହି ବାହ୍ୟ ଶକ୍ତି ଓ ପରିସ୍ଥିତିର ବିଶ୍ଳେଷଣରେ ଆସ୍ଥା ନ ରଖି ବିପ୍ଳବ କରେ ତା ହେଲେ ସେ ନିଶ୍ଚୟ ପରାସ୍ତ ହେବ । ଏହି ଦୃଷ୍ଟିରୁ ଯେ କୌଣସି ଐତିହାସିକ ବ୍ୟକ୍ତିର ତତ୍କାଳୀନ ସମାଜ ଉପରେ ପ୍ରଭାବ ଏବଂ ନାନା କ୍ଷେତ୍ରରେ ସେମାନଙ୍କର ଜୟ ପରାଜୟ ସେ ସମୟର ପାରିପାର୍ଶ୍ୱିକ ଅବସ୍ଥା, ସାମାଜିକ ଶକ୍ତି, ସଂଗଠନ ଓ ସମ୍ପର୍କ ଉପରେହିଁ ନିର୍ଭର କରିଥାଏ । ଖାଲି ସେତିକି ନୁହେଁ, ଏସବୁ ପରିସ୍ଥିତି ମଧ୍ୟ ମୂଳରୁ ଏମାନଙ୍କୁ ସୃଷ୍ଟି କରିଥାଏ; କିନ୍ତୁ ଏମାନଙ୍କର ବାହା[illegible]ଯ ଏମାନେ ପାରିପାର୍ଶ୍ୱିକ ଅବସ୍ଥାଦ୍ୱାରା ସବୁବେଳେ

ଫଳବତ୍ ପରିବର୍ତ୍ତନ ନ ହୋଇ ସ୍ଵୋପାର୍ଜିତ ଶକ୍ତି ସାହାଯ୍ୟରେ ବିଭିନ୍ନ ସାମାଜିକ ଧାରାକୁ ଉପଯୁକ୍ତ ପରିସ୍ଥିତି ଓ ନିର୍ଦ୍ଦିଷ୍ଟ ଭବିଷ୍ୟତ ଯୋଜନା ଅନୁସାରେ ପରିଚାଳିତ କରନ୍ତି ଏବଂ ଏହି ପରିଚାଳନାରେ ହିଁ ସେମାନଙ୍କର କୃତିତ୍ୱ, ଜୟ ପରାଜୟ ସବୁ କିଛି ନିର୍ଭର କରେ ।

ଇତିହାସକୁ ଏହି ଭାବରେ ଅଧ୍ୟୟନ କଲେ ପ୍ରତ୍ୟେକ ବିପ୍ଳବ, ଯୁଗାନ୍ତକାରୀ ପରିବର୍ତ୍ତନ ଓ ଅନ୍ୟାନ୍ୟ ପ୍ରଧାନ ଐତିହାସିକ ଘଟଣାବଳୀର ତାତ୍ପର୍ଯ୍ୟ ଭଲଭାବରେ ବୁଝିହେବ । ତା ନହେଲେ ରାଜା ଓ ଐତିହାସିକ ବ୍ୟକ୍ତିମାନଙ୍କର ଜୀବନୀ ପଢ଼ି ସେମାନଙ୍କର ଗୁଣ ଅଦ୍ଭୁତ ଖିଆଲ ଇଚ୍ଛାରେ ହିଁ ମୁଖସ୍ଥ କରିବାକୁ ପଡ଼ିବ । ତଦ୍ବାରା ଇତିହାସ, ମୂଳ ମନୁଷ୍ୟ ମନ ଏପରି ଅଲୌକିକ ଭାବରେ ଅସଂଖ୍ୟ ଘଟଣାବଳୀକୁ ପରି ଆବୃତ୍ତି କରିବାରେ ନିମଗ୍ନ ହୋଇପଡ଼େ ଓ ଅନେକ ଐତିହାସିକ ଘଟଣାବଳୀ ଭିତରେ କୌଣସି ଯୁକ୍ତିଯୁକ୍ତ କାର୍ଯ୍ୟ କାରଣ ସମ୍ପର୍କ ଅବସ୍ଥାରେ ଛାଡ଼ି ନ ଦେବାରୁ ଅନେକ ସମୟ ଧର୍ମ ମତେ ରଖିବା ମଧ୍ୟ ସମ୍ଭବ ହୁଏନାହିଁ । ଥରେ ସ୍କୁଲ କଲେଜ ପରି ବର୍ଷ ବର୍ଷ ଧରି ମନେ ରଖାଯାଇ ପାରେ କିନ୍ତୁ; ଅନେକ ଥର ସ୍କୁଲରେ ଇତିହାସ ପଢ଼ି ମୁଖସ୍ଥ କରିଥିଲେ ସୁଦ୍ଧା ଅଳ୍ପ ସମୟ ଭିତରେ ଅଧିକାଂଶ ଐତିହାସିକ ଘଟଣା ମନରୁ ଲିଭିଯାଏ । ଇତିହାସ ହେଉଛି ଯୁଗଯୁଗର ଧରି ମନୁଷ୍ୟ କାର୍ଯ୍ୟକଳାପର କାହାଣୀ—ତାହେଲେ ତାର ଧାରାବାହିକ ସମ ବିକାଶରେ ନିଶ୍ଚୟ ଯୁକ୍ତିସଙ୍ଗତ କାରଣ ଅଛି । କିନ୍ତୁ ଇତିହାସକୁ ଏପରି ଭାବରେ ନଦେଖି ଆମେ ଯଦି ସେ ଯୁଗର କେତେ ଜଣ ପ୍ରଭାବଶାଳୀ ବ୍ୟକ୍ତିଙ୍କର କାର୍ଯ୍ୟାବଳୀ ପଢ଼ୁ

ତା ହେଲେ ଏହା ଅସମ୍ବଦ୍ଧ ଆକସ୍ମିକ ଘଟଣା ଓ ଖିଆଲର ଅଲୌକିକ ଟିପ୍ପଣୀ ବ୍ୟତୀତ ଆଉ କିଛି ନୁହେଁ । ଏପରି ଇତିହାସ ପଢ଼ିବା ଯାହା ଅସଂଲଗ୍ନ ଅର୍ଥହୀନ ଅସଂଖ୍ୟ ଶବ୍ଦାବଳୀକୁ ପଢ଼ି ମନେ ରଖିବା ତାହା । ମନୁଷ୍ୟ ସମାଜର ଧାରାବାହିକ କାହାଣୀ ହିସାବରେ 'ଇତିହାସକୁ ଉପନ୍ୟାସ ବା କାବ୍ୟ ସହିତ ତୁଳନା କରଯାଇ ପାରେ ।'

---

# * ମାନସିକ ଦ୍ୱନ୍ଦ୍ୱ

ପାରିପାର୍ଶ୍ୱିକ ଅବସ୍ଥା ସହିତ ମିଳାଇ ଚଳିବା କ୍ଷମତା ହେଉଛି ଜୀବନ ଶକ୍ତିର ପ୍ରଧାନ ଧର୍ମ—ସାଧାରଣ ସମୟରେ ମନୁଷ୍ୟର ସ୍ୱଚ୍ଛଚଳନ, ଭାବସ୍ରୋତ, ଆସ୍ଥାର ଭଙ୍ଗୁର, ସନ୍ତୋଷ ସବୁ ପରିସ୍ଥିତିଉପଯୋଗୀ ହେବା ଉଚିତ। ତା ହେଲେ ସେ କୃତକାର୍ଯ୍ୟତାର ସହିତ ଆଗେଇ ଚାଲି ପାରିବ, ନଚେତ୍ ପଛେଇ ଯିବ—ଜୀବନ ସଂଗ୍ରାମରେ ହାରିଯିବ—ଯେଉଁମାନେ ଏପରି ଭାବରେ ତାଳ ପକାଇ ଅଗ୍ରସର ହେବେ, ସେମାନେ ଟପିଯିବେ। ଏ ପ୍ରକାର ଅଗ୍ରଗତିରେହିଁ ମନୁଷ୍ୟର ଉନ୍ନତି—ସଭ୍ୟତାର ପ୍ରଗତି—ସଂସ୍କୃତିର ପରକାଷ୍ଠା ଓ ଜୀବନର ସରସତା। ପ୍ରାଗୈତିହାସିକ ଯୁଗରୁ ମାନବ ଜାତିର ଏ ପ୍ରକାର ପ୍ରବଳ ଚେଷ୍ଟା ଲାଗି ଆସିଛି। ତେଣୁ ଏହା ମହାମାନବୀୟ ଜାତିଧର୍ମ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ।

ମନୁଷ୍ୟ ବଞ୍ଚିବା ପାଇଁ ପ୍ରକୃତିର ସାହାଯ୍ୟ ଲୋଡ଼େ। ପ୍ରକୃତିର ବିନା ସାହାଯ୍ୟରେ ତାର କୌଣସି ସୁବିଧା ହୋଇ ପାରିବ ନାହିଁ। ମନୁଷ୍ୟ ପ୍ରକୃତିଠାରୁ ଗୋଟିଏ ସ୍ୱତନ୍ତ୍ର ଅଲଗା ଜୀବ ନୁହେଁ। ବରଂ ସେ ହେଉଛି ପ୍ରକୃତି ନିର୍ମିତ ଗୋଟିଏ କାର୍ଯ୍ୟକାରୀ କେନ୍ଦ୍ର ମାତ୍ର—କାରଣ ମନୁଷ୍ୟ ସଚେତନ ଅବସ୍ଥା ପ୍ରାପ୍ତ ହୋଇଥିବାରୁ ପ୍ରକୃତିର ବନ୍ଧନ ଶକ୍ତି ଭିତରୁ ନିଜର ସୁବିଧାଲାଗି ବ୍ୟବହୃତ ହୋଇ ପାରୁଥିବା ଶକ୍ତିଗୁଡ଼ିକୁ ଆଦର କରେ—

---

* ଏ ପ୍ରବନ୍ଧରେ ମନୁଷ୍ୟଙ୍କ ସମସ୍ତପ୍ରକାର ମାନସିକ ଦ୍ୱନ୍ଦ୍ୱ ବିଷୟରେ ଅବଲୋକନ କରାଯାଇନାହିଁ। [illegible] ସେ ଅବସ୍ଥାର ହେଉଥିବାବେଳେ ତା ମନ ଭିତରେ ପ୍ରତ୍ୟେକ ସ୍ତରରେ ହେଉଥିବା ଦ୍ୱନ୍ଦ୍ୱର ସାମାନ୍ୟ ଆଭାସ ଦେବାପାଇଁ ଚେଷ୍ଟା ହୋଇଛି।

ନାନା ପ୍ରକାରର କାମରେ ଖଟାଇ ନିଜର ସୁବିଧା ହାସଲ କରିପାରେ ଏବଂ ଅନ୍ୟାନ୍ୟ କ୍ଷତିକାରକ ଶକ୍ତିଗୁଡ଼ିକୁ ଅନେକ ସମୟରେ ଦୂରରେ ରଖିବାକୁ ଚେଷ୍ଟା କରେ—ନିଜର ସୁବିଧା ଅନୁସାରେ କାମରେ ଲଗାଇ ନ ପାରିବା ପର୍ଯ୍ୟନ୍ତ ସେଗୁଡ଼ିକୁ ଶତ୍ରୁ ବୋଲି ମଧ୍ୟ ମନେ କରେ । ଯେଉଁ ପ୍ରାକୃତିକ ଶକ୍ତି ସମୂହକୁ ନିଜର ଉପକାରୀ ବନ୍ଧୁ ବୋଲି ମନେକରେ, ସେମାନଙ୍କୁ ଦେବତା ବୋଲି ଗ୍ରହଣ କରିଥାଏ । ବିଶେଷତଃ ବହୁ ସହସ୍ର ବର୍ଷ ତଳେ—ମନୁଷ୍ୟ ଜୀବନ ଯେତେବେଳେ ଅତ୍ୟନ୍ତ ସରଳ ଥିଲା ଓ ଚାରିପାର୍ଶ୍ୱର ପରିସ୍ଥିତି ମଧ୍ୟ ତାର କାର୍ଯ୍ୟକଳାପ ଯୋଗୁଁ ଜଟିଳ ହୋଇ ପଡ଼ି ନ ଥିଲା—ସେତେବେଳେ ମନୁଷ୍ୟର ସରଳ ମନ ପ୍ରାକୃତିକ ଜଗତ ପ୍ରତି ସମ୍ମାନ ଦେଖାଉଥିଲା—ଆଦରରେ ପୂଜା କରୁଥିଲା । ନିଜର ଆକୃତି ଦେଇ ସେ ସବୁକୁ ମାନବୋଚିତ ଦୟା, ସେବା, କ୍ଷମାଗୁଣରେ ବିଭୂଷିତ କରି ନିଜର ପରମବନ୍ଧୁ ଭାବରେ ଗ୍ରହଣ କରିପାରିଥିଲା । ଆର୍ଯ୍ୟମାନେ ସୂର୍ଯ୍ୟ, ଚନ୍ଦ୍ର, ବରୁଣ, ଇନ୍ଦ୍ର, କୁବେର ପ୍ରଭୃତିଙ୍କୁ ଯେଉଁ ସମ୍ମାନ ଓ ଭକ୍ତି ଦେଖାଉଥିଲେ ତାହା ସେମାନଙ୍କର ଅତି ସରଳ ମନର ଯଥେଷ୍ଟ ଆଭାସ ଦିଏ । ସଙ୍ଗୀତର ପ୍ରାଣମତାଣିଆ ଉଚ୍ଛ୍ୱାସରେ ସେମାନଙ୍କର ପ୍ରାଣର ନିକପଟ ଆବେଦନ ଓ ବିଶ୍ୱାସ ଫୁଟି ଉଠେ । ସୃଷ୍ଟିକର୍ତ୍ତା ଭଗବାନ ଯେ ସେମାନଙ୍କର ସୁବିଧା ପାଇଁ ଚନ୍ଦ୍ର, ସୂର୍ଯ୍ୟ ସୃଷ୍ଟି କରିଛନ୍ତି—ଇନ୍ଦ୍ରଙ୍କୁ ବୃଷ୍ଟି କରିବାପାଇଁ ନିଯୋଜିତ କରିଛନ୍ତି ଓ ଅନ୍ୟାନ୍ୟ ଯାବତୀୟ ଜଡ଼ବସ୍ତୁରୁ ଜୀବ.ଜଗତ, ବିଶେଷତଃ ସର୍ବଶ୍ରେଷ୍ଠ ମାନବ ସମାଜର ସ୍ୱାଚ୍ଛନ୍ଦ୍ୟ ଲାଗି ସୃଷ୍ଟି କରିଛନ୍ତି, ଏ ବିଷୟରେ ବୋଧହୁଏ କାହାରି ସନ୍ଦେହ ନ ଥିଲା । ମନୁଷ୍ୟ ମନୁଷ୍ୟର ତଥା ଅନ୍ୟାନ୍ୟ ଜୀବଜନ୍ତୁଙ୍କର ଉପକାର ସାଧନ କରିପାରେ—ଦୟା ଦେଖାଇ ସବୁ ଜଣେ ଜଣକୁ

ଯନ୍ତ୍ରଣା ଜ୍ୱାଳାରୁ ରକ୍ଷା କରିପାରେ, କିମ୍ବା କେତେକ କ୍ଷେତ୍ରରେ ମୃତ୍ୟୁମୁଖରୁ ଫେରାଇ ପାରେ କିମ୍ବା ଖାଇବାକୁ ଦେଇ ଆରୋଗ୍ୟ ନିଜ ପାଖରେ ସମସ୍ତ ପ୍ରକାର ସୁବିଧା ସବୁ ବଜାଇ ରଖିପାରେ—ତା ହେଲେ ସେ ତାହାର ତ୍ରାଣକର୍ତ୍ତା ବା ପାଳନକର୍ତ୍ତା ବୋଲି ବିବେଚିତ ହୋଇଥାଏ । ତେବେ ଏତେ ବଡ଼ ସୃଷ୍ଟିରେ ଏତେ ବେଶି ସୁବିଧା ଯେତେବେଳେ ମନୁଷ୍ୟପାଇଁ ସୃଷ୍ଟି ହୋଇଛି, ସେତେବେଳେ ନିଶ୍ଚୟ ଜଣେ ସୃଷ୍ଟିକର୍ତ୍ତା ମନୁଷ୍ୟର ସୁଖପାଇଁ ଏସବୁର ନିୟାମକ ହିସାବରେ ରହିଛନ୍ତି ଏବଂ ଏହି ନିୟାମକ ମନୁଷ୍ୟପରି ହେଲେ ସୁଦ୍ଧା ମନୁଷ୍ୟଠାରୁ ବହୁଗୁଣରେ ଶକ୍ତିଶାଳୀ—ପ୍ରକୃତରେ ସୃଷ୍ଟିର ଅସୀମତା ଦୃଷ୍ଟିରୁ ସେ ନିଶ୍ଚୟ ଅସୀମ; ସମସ୍ତ ପ୍ରକାର ଗୁଣରେ ଅପରିସୀମ ଅନନ୍ତତାରେ ସର୍ବଜ୍ଞତା ଓ ସମୟ ଦୃଷ୍ଟିରୁ ଅବିନଶ୍ୱର ହୋଇଥିବେ । ଏହି ଦୃଢ଼ ବିଶ୍ୱାସ ଯେଉଁମାନଙ୍କର ଥିଲା ସେହିମାନେ ହେଉଛନ୍ତି ସେ ଯୁଗର ସର୍ବଶ୍ରେଷ୍ଠ ମାନବ ଜାତି—ସେମାନଙ୍କର ଏହି ଦୃଢ଼ ବିଶ୍ୱାସହିଁ ସେମାନଙ୍କୁ ପ୍ରଗତି ପଥରେ ଆଗେଇ ନେଇ ପାରିଥିଲା । ଦ୍ୱନ୍ଦ୍ୱହୀନ, ଦୃଢ଼ ରହିବା ଅଖଣ୍ଡ ବିଶ୍ୱାସହିଁ ମନୁଷ୍ୟର ଉନ୍ନତି ପଥର ପ୍ରଧାନ ବନ୍ଧୁ । ଅବଶ୍ୟ ଏ ପ୍ରକାର ଅତି ଉଚ୍ଚଧରଣର ବିଶ୍ୱାସ ସେ ଯୁଗର ସବୁ ଶ୍ରେଣୀର ମାନବ ସମାଜରେ ନ ରହିବା ସ୍ୱାଭାବିକ । କେବଳ ବୁଦ୍ଧି, ଚିନ୍ତାର ଦୃଷ୍ଟି ସାମାନ୍ୟ କେତେକ ଉପର ଶ୍ରେଣୀର ଲୋକଙ୍କ ମନରେହିଁ ଏପରି ବିଶ୍ୱାସ ସମ୍ଭବ । ଯାନ୍ତ୍ରିକ ପରିକ୍ରମରେ ସାଧାରଣ ଲିପ୍ତ ଥିବା ଜନସାଧାରଣଙ୍କ ମନରେ ଏ ପ୍ରକାର ବୁଦ୍ଧି, ଚିନ୍ତାର ଦୃଷ୍ଟି କଠିନ ଦାର୍ଶନିକ ବିଶ୍ୱାସ ଜନ୍ମିବା କଷ୍ଟକର । ତା ଅର୍ଥ ସେମାନଙ୍କର ଯେ କିଛି ବିଶ୍ୱାସ ନ ଥିଲା, ତାହା ନୁହେଁ । ସେମାନଙ୍କର ବିଶ୍ୱାସ ସେମାନଙ୍କର ପାରିପାର୍ଶ୍ୱିକ ପରିସ୍ଥିତି ଅନୁଯାୟୀ ଅତି ସରଳ ତଥା ବିଶ୍ୱ

ସ୍ଥୂଳ ଥିଲା । କାରଣ ମନରେ କୌଣସି ନା କୌଣସି ବିଶ୍ୱାସ ନରହି କେହି ମନୁଷ୍ୟ ସ୍ୱଚ୍ଛନ୍ଦରେ ଜୀବନଯାପନ କରି ପାରେ ନା । ସକାଳ-ସନ୍ଧ୍ୟା ଓ ବୁଦ୍ଧିର ବିକାଶ ହେଲା ଦିନଠାରୁ ମୃତ୍ୟୁପର୍ଯ୍ୟନ୍ତ ପ୍ରତ୍ୟେକ ମୁହୂର୍ତ୍ତରେ ବିଶ୍ୱାସହିଁ ମନୁଷ୍ୟକୁ ଚଳାଇଥାଏ । ସକାଳୁ ଉଠିଲାକ୍ଷଣି ସେ ମୃଦୁ ଦିନକୁ ଖୋଜେ—କାରଣ ତାର ବିଶ୍ୱାସ ଯେ ସୂର୍ଯ୍ୟ ପ୍ରତିଦିନ ଯେଉଁପରି ସେହି ଗୋଟିଏ ଦିଗରେ ଦେଖାଦେବ—ଦିନଯାକ କାମ କଲା ପରେ ସେ ଅପେକ୍ଷା କରେ ରାତିକୁ ବିଶ୍ରାମ ପାଇଁ—ଗୋଟିଏ ସମୟରେ ସେ ଆଶା କରେ ଯେ ବର୍ଷା ହେବ, ଆଉ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଶୀତ ବା ଗ୍ରୀଷ୍ମ ହେବ । ସେହି ଅନୁସାରେ ସେ ତାର ଦୈନନ୍ଦିନ ଜୀବନର କାର୍ଯ୍ୟାବଳୀ ନିୟନ୍ତ୍ରିତ କରେ । ଏହି ସବୁ ବିଶ୍ୱାସ ସହିତ ବାସ୍ତବ ଘଟଣାର କୌଣସି ସାମଞ୍ଜସ୍ୟ ନ ଥାଇପାରେ—ମଝିରେ ମଝିରେ ସେଥିଲାଗି ତାର ଅସୁବିଧା ହୋଇପାରେ—ତଥାପି ନବ ଯୁଗର ବୈପ୍ଳବିକ ନୂତନ ବିଶ୍ୱାସ ପୁରାତନ ବିଶ୍ୱାସର ସ୍ଥାନ ଅଧିକାର ନ କଲାଯାଏ ମନୁଷ୍ୟ ପୂର୍ବ ବିଶ୍ୱାସକୁ ମିଥ୍ୟାବୋଲି ବର୍ଜନ କରି ଦେଇ ପାରେ ନା—ଜ୍ୱରର ବେଗ, ପ୍ରାକୃତିକ ଦୁର୍ଘଟଣା ମନ୍ତ୍ରର ସାହାଯ୍ୟରେ ବିନା ସେ ସବୁକୁ ବୁଝିବାକୁ ଚେଷ୍ଟା କରେ, ତଥାପି ପୂର୍ବ ବିଶ୍ୱାସକୁ ଛାଡ଼ିପାରେ ନା । ଫଳରେ ବିଶ୍ୱାସ କୁସଂସ୍କାରଯୁକ୍ତ ହୋଇପଡ଼େ । କ୍ରମେ କ୍ରମେ ନୂତନଯୁଗର ନୂତନ ଆଲୋକରେ ମିଥ୍ୟା ପ୍ରମାଣ ହୋଇଯାଏ—ଯେଉଁମାନେ ସେ ସବୁକୁ ସହଜରେ ଛାଡ଼ିପାରନ୍ତି ସେମାନେ ଅଗ୍ରସର ହୁଅନ୍ତି—ନବ ଯୁଗର ନୂତନ ମଶାଲଧାରୀ ସୈନିକମାନେ ଏମାନଙ୍କୁ ପଛକୁ ଠେଲି ଆଗକୁ ମାଡ଼ି ଯାଆନ୍ତି—କ୍ରମେ ବିଶ୍ୱାସ ସବୁ ବଦଳି ଯାଏ—କିନ୍ତୁ ପୁରୁଣା ବିଶ୍ୱାସ ପରିବର୍ତ୍ତେ ନୂତନ ବିଶ୍ୱାସର ପ୍ରତିଷ୍ଠା ହେବାଲାଗି ଅନେକ କ୍ଷେତ୍ରରେ ବହୁ ସମୟ ଲାଗେ—ମାନବସମାଜକୁ

ବହୁ ଚେଷ୍ଟା କରିବାକୁ ହୁଏ—ଅନେକ ସମୟରେ ସୂକ୍ଷ୍ମ ସଙ୍ଗତ, ଗଣ୍ଡଗୋଳ ମଧ୍ୟ ଦେଖାଯାଇଥାଏ—ଏଥିରେ କେତେକ ଦୁର୍ବଳ ଦେଶ ହୁଏତ ପୃଥିବୀରୁ ଧ୍ୱଂସ ହୋଇଯାଏ ଏବଂ ଆଉ କେତେକ ଅପେକ୍ଷାକୃତ ଅବନତ ଦେଶ ଧୁ ଧୁ କରି ଉନ୍ନତିର ସୋପାନ ଶ୍ରେଣୀରେ ଉଠିପଡ଼ନ୍ତି ।

× × × ×

ଯାଶ ମନୁଷ୍ୟ ଜାତିର ଏହି କ୍ରମବିକାଶର ଇତିହାସ ଆଲୋଚନା କଲେ ଦେଖାଯାଏ ଯେ ନାନାପ୍ରକାର ବିଶ୍ୱାସ ଭିତରେ ଅନ୍ତରର ଦ୍ୱନ୍ଦ୍ୱ ଲାଗି ରହିଛି । ଇନ୍ଦ୍ର, ଚନ୍ଦ୍ର, ବରୁଣ, ସୂର୍ଯ୍ୟ ପ୍ରଭୃତି ମାନବକଳ୍ପନା ପ୍ରସୂତ ଦେବତାମାନଙ୍କର କ୍ଷମତା, ସେମାନଙ୍କର ମନୁଷ୍ୟମାନଙ୍କୁ ଯଦୃଚ୍ଛଭାବରେ ପାଳନ କରିବାର ଅନ୍ୟାନ୍ୟ ମୁହୂର୍ତ୍ତ ସମୟରେ ଯେଉଁ ଦୃଢ଼ ବିଶ୍ୱାସ ତାହା ସବୁ ସମୟରେ କାର୍ଯ୍ୟକାରୀ ହୋଇପାରିବ ନା । ପରବର୍ତ୍ତୀ ଯୁଗର ପରିବର୍ଦ୍ଧିତ ଜ୍ଞାନର ସୀମା ବଢ଼ି ଗଲାବେଳେ ସଙ୍ଗେ ସଙ୍ଗେ ଏ ପ୍ରକାର ସରଳ ବିଶ୍ୱାସ ଭିତରେ ଦ୍ୱନ୍ଦ୍ୱ ଦେଖାଦେବା ସ୍ୱାଭାବିକ । ବୁଦ୍ଧିମାନ ମନୁଷ୍ୟ ନିଜର ଅଭିଜ୍ଞ ଶକ୍ତି ସାହାଯ୍ୟରେ ଦେଖି ପାରିଲା ଯେ ବହୁତ ପୂଜା କଲେ ମଧ୍ୟ ଅସମୟରେ ଇନ୍ଦ୍ରଦେବଙ୍କ କେବେ ଦେବେ ମନୁଷ୍ୟ ବନ୍ୟା ପାଉନି—କିନ୍ତୁ କୌଣସି ପୂଜା ନ କଲେ ମଧ୍ୟ ଏବଂ କୌଣସି ଦରକାରରେ ଆସୁ ନ ଥିଲେ ମଧ୍ୟ ଅନବରତ ବୃଷ୍ଟିରେ ସବୁ ବୁଡ଼ିଯାଉଛି—ଦିନ ଦିନ ଧରି ପୂଜା କଲେ ମଧ୍ୟ ଜଣେ ଅନବରତ ଯନ୍ତ୍ରଣା ପାଉଛି ଓ ଆଉ ଜଣେ ପଜା ପୂଜ ନକରି ବରଂ ଦେବତାଙ୍କର ନାମ ନ ନେଇ ମଧ୍ୟ ଆରାମରେ ରହି ପାରୁଛି—ଜଣେ କୃତ୍ରିମ ଉପାୟରେ ବସନ୍ତ କମ୍ପା ଟିକାରୁ ରକ୍ଷା ପାଇ ପାରୁଛି ଓ ଆଉ ଜଣେ ଘଣ୍ଟା ଘଣ୍ଟା ଡାକିଲା ବୁଢ଼ୀମା

ଯାହା ପୂର୍ବ ପରମ୍ପରାର ମୃତ୍ୟୁ ମୁଖରେ ପଡ଼ୁଛି । ଏହି ବ୍ୟର୍ଥତା ପଛରୁ ଲାଗି ରହିଛି ଏ ପୁରୁଣା ବିଶ୍ୱାସର କଥା—ଯାହା ଥରେ ଦୃଢ଼ ବିଶ୍ୱାସ ବୋଲି ସ୍ୱୀକୃତ ହୋଇଥାଏ, ତାହା କ୍ରମେ ଅବିଶ୍ୱାସରେ ପରିଣତ ହୁଏ । ପ୍ରଥମେ ଅଳ୍ପ ବୁଦ୍ଧିମାନ ଲୋକଙ୍କ ମନରେ ଏ ପ୍ରକାର ବିପ୍ଳବାତ୍ମକ ସନ୍ଦେହ ଦେଖାଯାଏ, କିନ୍ତୁ କ୍ରମେ ଏହା ସମାଜର ସବୁ ଶ୍ରେଣୀର ମନୁଷ୍ୟମାନଙ୍କ ମନରେ ଆସି ଆସ୍ଥାନ ମାଡ଼ି ବସେ ।

ସଚେତନ ମନୁଷ୍ୟର ପ୍ରଚେଷ୍ଟାର ଅନୁସାରେ ଅଚେତନ ପ୍ରାକୃତିକ ବସ୍ତୁ ଓ ଜନ୍ତୁ ଜଗତର ଗୁଡ଼ିକୁ ଦେଖିବାରେ ଯେଉଁ ମୂଳ ବିଶ୍ୱାସ ମନୁଷ୍ୟ ମନକୁ ଆବୋରି ରହିଥିଲା ସେସବୁ କ୍ରମେ କ୍ରମେ ଦୂରୀଭୂତ ହୋଇଯିବା ପରେ ଯେ ମନୁଷ୍ୟର ବିଶ୍ୱାସ ସବୁ ମୁକ୍ତ ହୁଏ ଓ ମନୁଷ୍ୟର ଚିନ୍ତାଧାରା ବୈଜ୍ଞାନିକ ଦୃଷ୍ଟିକୋଣରେ ପର୍ଯ୍ୟବସିତ ହେବ, ତାହା ନୁହେଁ । ମନୁଷ୍ୟ କେବେହେଲେ ଅବଲମ୍ବିତ ତଥ୍ୟରେ ପହଞ୍ଚିପାରିବ ନାହିଁ । ଯାହା ଆଜି ସତ୍ୟ ବୋଲି ମନେ ହେଉଛି ହୁଏତ ଜ୍ଞାନର ସୀମା ବଢ଼ିଗଲା ସଙ୍ଗେ ସଙ୍ଗେ କାଲି ତାହା ମିଥ୍ୟା ବୋଲି ପ୍ରମାଣିତ ହୋଇଯିବ—ଆଜିର ବିଶ୍ୱାସ କାଲିର କୁସଂସ୍କାରରେ ପରିଣତ ହୋଇଯିବ । ତେଣୁ ମନୁଷ୍ୟର ବିଶ୍ୱାସ ସେହି ଅନୁସାରେ ବଦଳିବା ଉଚିତ । କିନ୍ତୁ ଏପରି ବଦଳିବା ଯୁକ୍ତି ଯୁକ୍ତ ବୋଲି ମନୁଷ୍ୟର ମନେ ହେଲେ ମଧ୍ୟ ଏବଂ କୌଣସି ଗୋଟିଏ କଥାକୁ ସେ ମିଥ୍ୟା ବୋଲି ଗ୍ରହଣ କଲେ ମଧ୍ୟ ତାର ପୁରାତନ ବିଶ୍ୱାସକୁ ସେ ସହଜରେ ଛାଡ଼ି ପାରେ ନା । ସମାଜର ଅଧିକାଂଶ ଲୋକେ ନିଜର ଜ୍ଞାନର ସୀମା ବଢ଼ିଥିଲେ ମଧ୍ୟ ସେମାନଙ୍କର ପୁରାତନ ବିଶ୍ୱାସକୁ ଖୁବ୍ ଶୀଘ୍ର ଛାଡ଼ି ପାରନ୍ତି ନାହିଁ । ତା ଅର୍ଥ

ବୃଦ୍ଧି ଗୋଟିଏ କଥାକୁ ସତ୍ୟ ବୋଲି ସ୍ୱୀକାର କଲ୍ଲ ନ ଥିଲେ ସୁଦ୍ଧା ମନର ଅନ୍ୟ ଗୋଟିଏ କ୍ଷେତ୍ରରେ ତାହା ଆଦର୍ଶ ରୂପେ ଗୃହୀତ ହୋଇଥାଏ । ଯେତେବେଳେ ଜ୍ଞାନ ରାଜ୍ୟରେ ବହୁବାମ୍ଭକ ପରିବର୍ତ୍ତନ ଆସେ ସେତେବେଳେ ମନୁଷ୍ୟ ମନରେ ଏ ପ୍ରକାର ଦ୍ୱନ୍ଦ୍ୱ ଦେଖାଯାଏ । ବୃଦ୍ଧି ମନୁଷ୍ୟ ଜୀବନର ସାମାନ୍ୟ ଗୋଟିଏ ଅଂଶକୁ ମାତ୍ର ପରିବର୍ତ୍ତିତ କରେ, କିନ୍ତୁ ବିଶ୍ୱାସ ତାର ସାରା ପ୍ରାଣକୁ ଆନ୍ଦୋଳିତ କରି ଦେଇପାରେ । ସେଥିପାଇଁ ବୁଦ୍ଧିର ଆଦେଶରେ ବିଶ୍ୱାସ ହଠାତ୍ ବଦଳି ଯାଏ ନାହିଁ । ଅବଶ୍ୟ କେତେକ ଯେ ବୁଦ୍ଧିଶକ୍ତି ଅନୁସାରେ ବିଶ୍ୱାସ ବଦଳାଇ ନ ପାରନ୍ତି ତାହା ନୁହେଁ, କିନ୍ତୁ ସାଧାରଣ ଲୋକେ ଏହା ସହଜରେ କରି ପାରନ୍ତି ନାହିଁ । ବୃଦ୍ଧି ବହୁତ ବହୁତ ଆଗକୁ ମାଡ଼ି ଯାଉଥିବା ବେଳେ ବିଶ୍ୱାସ ପଛ ଦିଗକୁ ଆଉକୁ ଟାଣି ଧରେ—କିନ୍ତୁ ଏ ଦୁଇ ଶକ୍ତି ଭିତରେ ଉପଯୁକ୍ତ ମିଳନ ନ ହେଲେ ମନୁଷ୍ୟର ମନ ବଡ଼ ଦୁର୍ବଳ ହୋଇପଡ଼େ—ଜୀବନୀ ଶକ୍ତି ବାଧାବିଘ୍ନ ଅତିକ୍ରମ କରି ଆଗକୁ ଅଗ୍ରସର ହେବାକୁ ସାହସ କରିପାରେ ନା । ବ୍ୟକ୍ତିବିଶେଷଙ୍କର ଏ ପ୍ରକାର ଦ୍ୱନ୍ଦ୍ୱଯୁକ୍ତ ମନ ସାରା ସାମାଜିକ ଜୀବନକୁ ମଧ୍ୟ ଦୁର୍ବଳ ଓ କଳୁଷିତ କରି ପକାଏ । ସେହିଁ ଜାତି ଯେତେ ମଧ୍ୟ ଶକ୍ତିଶାଳୀ, ସେହି ଜାତିର ଲୋକେ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱରୁ ସେତେ ବାହାରେ । ମନୁଷ୍ୟର ବିଶ୍ୱାସ, ବୃଦ୍ଧି ଓ ଇଚ୍ଛାର ଶକ୍ତି ସହିତ ତାଳ ପକାଇ ଯଦି ନ ପାରିବେ ତାର କାମ କରିବା ପାଇଁ ଦୃଢ଼ତା ଆସି ପାରେନା ।

ଆଧୁନିକ ଯୁଗରେ ପ୍ରତ୍ୟେକ ଦେଶରେ ବିଜ୍ଞାନ ଶକ୍ତି ପରିଚାଳିତ ବିଜ୍ଞାନ ପ୍ରସୂତ ଫଳାଫଳ ସହିତ ମନୁଷ୍ୟର ବିଶ୍ୱାସ

ଅନେକ ସମୟରେ ଖାଦ୍ୟ ଖାଇ ନାହିଁ—ଏହିଭଳି ଯେଉଁ ବ୍ୟର୍ଥତା ଓ ମାନସିକ ଦ୍ୱନ୍ଦ୍ୱ ଦେଖାଯାଉଛି ତାହା ବହୁ କଷ୍ଟ ଦେଉଛି । ବିଶେଷତଃ ଆମ ଦେଶରେ ଏହାର ସତ୍ୟତା ଭଲ ଭାବରେ ଉପଲବ୍ଧି କରାଯାଏ । ଆମ ଦେଶରେ ବିଜ୍ଞାନର ପ୍ରଭାବ ଯେଉଁମାନଙ୍କ ଉପରେ ପଡ଼ୁଛି, ସେମାନେ ପ୍ରକୃତରେ ବିଜ୍ଞାନର ତଥ୍ୟାବଳୀ ଅନୁସାରେ ପରିଚାଳିତ ହୁଅନ୍ତି । ସଭାସ୍ଥଳରେ ବିଜ୍ଞାନ ଓ ମନୁଷ୍ୟର ବୁଦ୍ଧିର ଶକ୍ତିର ପ୍ରଶଂସା କରୁଥିଲେ ବେଳେ ଘରକୁ ଫେରିଲା ପରେ ହଜାର ହଜାର ବର୍ଷ ଧରି ଚଳି ଆସୁଥିବା ନାନାପ୍ରକାର ସଂକୀର୍ଣ୍ଣ କୁସଂସ୍କାରରେ ଦୃଢ଼ ବିଶ୍ୱାସ ରଖି କାମ କରନ୍ତି । ଟେଣ୍ଡୁ ପୋଥି ବାଇଗଣ ଓ ବାରବାଇଗଣ ମଧ୍ୟରେ ଯେଉଁ ପ୍ରଭେଦ, ତାହା ସ୍ପଷ୍ଟ କ୍ଷେତ୍ରରେ ଆମ୍ଭେମାନେ ଦେଖିବାକୁ ପାଉ । ଜଣେ ଡାକ୍ତର ବିଜ୍ଞାନସମ୍ମତ ଜ୍ଞାନ ବିଷୟରେ ବକ୍ତୃତା କରୁଥିଲାବେଳେ ପୁଅର ଦେହ ଖରାପ ହେଲେ ମା କାଳୀଙ୍କୁ କୁକୁଡ଼ା ପାଟେ ଲମ୍ବା ଶିବ ମନ୍ଦିର ପାଖରେ ବ୍ରାହ୍ମଣ ବସାଇ ଅଭିଷେକ କରେ । ସମାଜ ସେବୀ ନେତା ଶ୍ରେଣୀହୀନ, ଜାତିହୀନ, ବର୍ଣ୍ଣହୀନ ସମାଜ ବ୍ୟବସ୍ଥା ଗଢ଼ିବା ପାଇଁ ଲୋକମାନଙ୍କ ଆଗରେ ଜ୍ୱାଳାମୟୀ ବକ୍ତୃତା କରେ, ସେହିମାନଙ୍କୁ ପୁଅର ବ୍ରତଘର ପାଇଁ ମଧ୍ୟ ନିମନ୍ତ୍ରଣ କରେ । ଧର୍ମ ପରାୟଣ ଜନସେବୀ "ସର୍ବଦେବମୟ ନାରାୟଣ" ବୋଲି କହୁଥିଲେ ବେଳେ ହରିଜନମାନଙ୍କୁ ଜଳସ୍ପର୍ଶ କରେନା ଓ ଜଗନ୍ନାଥ ମନ୍ଦିର ଭିତରେ ପତିତପାବନ ବାନା ଉଡ଼ାଇଲା ପରେ ମଧ୍ୟ ହରିଜନ ପିଲାଟିଏ ମନ୍ଦିର ମଧ୍ୟରେ ପଶିଗଲାବୋଲି ପତିତପାବନଙ୍କର ଶରୀରକୁ ଅପବିତ୍ର ହେଲା ବୋଲି ଗୋଳ ଲଗାଏ । ଏହିପରି ନାନାପ୍ରକାର ଦ୍ୱନ୍ଦ୍ୱ ଆମମାନଙ୍କ ମନରେ ଦେଖା ଦେଉଛି ।

ତେଣୁ ଆମ ଲୋକଙ୍କ ଭିତରେ ଗୋଟିଏ ବଳିଷ୍ଠ ଆତ୍ମବିଶ୍ୱାସ ଦେଖାଯାଏ ନାହିଁ ବା କୌଣସି କାମରେ ମନର ଦୃଢ଼ତା ପ୍ରକାଶ ପାଏ ନାହିଁ । ଶିକ୍ଷିତ ସମ୍ପ୍ରଦାୟ ଭିତରେହିଁ ଏ ପ୍ରକାର ଦ୍ୱନ୍ଦ୍ୱ ବେଶି ଦେଖାଯାଏ । ଯେଉଁମାନେ ଆଧୁନିକ ଯୁଗର ସଂସ୍ପର୍ଶରେ ଆସି ନାହାନ୍ତି—ଯେଉଁମାନଙ୍କର ପୁରୁଣା ଆଦର୍ଶ ବିଜ୍ଞାନର ନୂତନ ସତ୍ୟ ଆଗରେ ମୁହାଁମୁହିଁ ହୋଇ ନାହିଁ, ସେମାନଙ୍କ ଭିତରେ ବରଂ ଏପ୍ରକାର ଦ୍ୱନ୍ଦ୍ୱ କମ୍ ଦେଖାଯାଏ । କିନ୍ତୁ ବର୍ତ୍ତମାନ ଆମ ଦେଶରେ ଯେଉଁ ଅବସ୍ଥା, ସେଥିରେ ଶିକ୍ଷିତ ଲୋକେହିଁ ସମାଜର ପ୍ରକୃତ କର୍ମକର୍ତ୍ତା । ତେଣୁ ଏମାନଙ୍କଠାରେ ଦ୍ୱନ୍ଦ୍ୱହୀନ ବଳିଷ୍ଠ ମନୋଭାବ ସୃଷ୍ଟି ନ ହେଲା ଯାଏ ଆମ ସମାଜ କୌଣସି ମତେ ଆଗେଇ ପାରିବ ନାହିଁ । ଯେଉଁ ଦେଶର ଅଧିକାଂଶ ନରନାରୀ ଅତୀତ ଯୁଗର ଆଦର୍ଶ ଓ ଆଧୁନିକ ଯୁଗର ବିଜ୍ଞାନସମ୍ମତ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ, ସେମାନେ ଆମମାନଙ୍କୁ ପଛରେ ପକାଇ ଆଗେଇ ଯିବେ ଏବଂ ଆମେ ଦୁର୍ବଳ ଓ ପରାଧୀନ ହୋଇ ପଡ଼ି ରହିବା । ତେଣୁ ପ୍ରତ୍ୟେକଙ୍କର ଏ ବିଷୟରେ ଗଭୀର ଚିନ୍ତା କରି ଦେଖିବା ଉଚିତ । *

---

* (କଟକ ବେତାର କେନ୍ଦ୍ର କର୍ତ୍ତୃପକ୍ଷଙ୍କ ସୌଜନ୍ୟରୁ)

# ନାରୀ ସ୍ୱାଧୀନତା

ସ୍ତ୍ରୀ ସ୍ୱାଧୀନତା ବିଷୟରେ ବହୁ ଯୁକ୍ତିତର୍କ, ନାନା ମତାମତ ଖଣ୍ଡନ ମଣ୍ଡନ ଚାଲି ଆସିଛି। କେତେକଙ୍କ ମତରେ ସ୍ତ୍ରୀମାନଙ୍କର ପ୍ରତ୍ୟେକ କ୍ଷେତ୍ରରେ ପୁରୁଷମାନଙ୍କପରି ସମସ୍ତ ପ୍ରକାର ସୁବିଧା ସୁଯୋଗ ଓ ସ୍ୱାଧୀନତା ପାଇବା ଉଚିତ—ଆଉ କେତେକ କହନ୍ତି ଯେ, ଗୃହକର୍ମ, ଶିଶୁପାଳନ ପ୍ରଭୃତିରେ ସେମାନଙ୍କର ପ୍ରକୃତିଗତ ଦକ୍ଷତା ଥିବା ଯୋଗୁଁ ସେହି କ୍ଷେତ୍ରରେ କେବଳ ସେମାନଙ୍କୁ ଉପଯୁକ୍ତ କରିବା ଲାଗି ଶିକ୍ଷା ଦିଆଯିବା ଉଚିତ। ଏମାନଙ୍କ ଛଡ଼ା ଆଉ ଦଳେ ଅଛନ୍ତି, ଯେଉଁମାନେ ସ୍ତ୍ରୀମାନଙ୍କୁ କେବଳ ଦାସୀ ଅବସ୍ଥାରେ ରଖିବାର ପକ୍ଷପାତୀ। ଏମାନଙ୍କ ମତରେ ସ୍ତ୍ରୀ ଶିକ୍ଷା ସ୍ୱାଧୀନତାକୁ ଉତ୍ସାହିତ କରିବା ମାନେ ସମାଜ ମଧ୍ୟରେ ବ୍ୟଭିଚାରକୁ ପ୍ରଶ୍ରୟ ଦେବା—ହଜାର ହଜାର ବର୍ଷଧରି ଚଳି ଆସିଥିବା ଭାରତୀୟ ସଂସ୍କୃତିକୁ ନଷ୍ଟ କରିଦେବା। ବହୁ ବାଦ ବିବାଦ ମଧ୍ୟରେ ଆମ ଦେଶରେ ଯେଉଁ ଅନୁପାତରେ ସ୍ତ୍ରୀ ଶିକ୍ଷା ଓ ଜାଗରଣ ଲାଗି ପ୍ରଚେଷ୍ଟା ଚାଲିଛି, ସେଥିରେ ଦେଶର ସମସ୍ତ ସ୍ତ୍ରୀ ଜାତି ଶିକ୍ଷିତା ହେବା ଲାଗି ବୋଧହୁଏ ଆଉ ଶହେ ବର୍ଷ ଲାଗିଯିବ ଏବଂ ତଥାପି ସେମାନେ ପ୍ରକୃତ ସ୍ୱାଧୀନତାର ଏକଶତାଂଶ ସୁଦ୍ଧା ଉପଭୋଗ କରି ପାରିବେ ନାହିଁ। ତା'ଅର୍ଥ ଆମ ଦେଶରେ ସ୍ତ୍ରୀ ଶିକ୍ଷା ପ୍ରତି କୌଣସି ନିର୍ଦ୍ଦିଷ୍ଟ ଯୋଜନା ଗୃହୀତ ହୋଇ ନାହିଁ। କି ଉପାୟରେ ସେମାନଙ୍କର ସବୁ କ୍ଷେତ୍ରରେ ମଙ୍ଗଳ ସାଧିତ ହେବ, ସେ ବିଷୟରେ ମଧ୍ୟ କୌଣସି ସୁଚିନ୍ତିତ ପ୍ରଣାଳୀ ଠିକ୍ କରାହୋଇଛି ବୋଲି ମନେ ହୁଏ ନାହିଁ। ସ୍ତ୍ରୀ ସ୍ୱାଧୀନତାର ସ୍ୱରୂପ—ସମ୍ବନ୍ଧରେ ପୁରୁଷମାନଙ୍କ

ଆଲୋଚନା ଚଳାଇଛନ୍ତି । ତେଣୁ ସ୍ତ୍ରୀମାନଙ୍କର ବିଶେଷ ପ୍ରଭାବ ନାହିଁ । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଭାରତର ସ୍ୱାଧୀନତା ବିଷୟରେ ଓକାଳତି ଭାଷାରେ ତର୍କବିତର୍କ ହୋଇପାରେ ପୁରୁଷସମାଜରେ ସ୍ତ୍ରୀ ସ୍ୱାଧୀନତାର ବିଷୟ ସ୍ୱଳ୍ପ—ତେଣୁ ବିଷୟର ଏକଦେଶଦର୍ଶୀ, ଆଲୋଚନା ସଂକୀର୍ଣ୍ଣ ଓ ଉପଦେଶର ରକ୍ଷଣଶୀଳ ହେବା ସ୍ୱାଭାବିକ । କେତେ କମ୍ ଶିକ୍ଷା ଓ ସ୍ୱାଧୀନତା ହେଲେ ନିଜର ମହାନୁଭବତା ପ୍ରକାଶ କରିହେବ ସେହି ମନୋଭାବ ପୁରୁଷମାନଙ୍କ ଆଲୋଚନା ଭିତରେ ଆତ୍ମପ୍ରକାଶ କରିପାରି ନପାରେ । ଏ କ୍ଷେତ୍ରରେ ପ୍ରତ୍ୟେକ ଯୋଜନା ପଛରେ ପୁରୁଷର ଦାନ ଓ ଦୟାର ମନୋବୃତ୍ତି କାମ କରୁଥାଏ—ତେଣୁ ସ୍ତ୍ରୀମାନେ ନିଜର ଶକ୍ତି ଓ ଯୋଗ୍ୟତା ବଳରେ ସ୍ୱାଧୀନତା ହାସଲ କରିବା ପରିବର୍ତ୍ତେ ପୁରୁଷର ଦାନକୁ ଅପେକ୍ଷା କରି ବସି ରହିଥିଲେ ଯାଏ ସେମାନଙ୍କୁ ଏ ପ୍ରକାର ମନୋବୃତ୍ତିର ସମ୍ମୁଖୀନ ହେବା ମଧ୍ୟ ସ୍ୱାଭାବିକ ।

ମାନବ ସମାଜର ଅଗ୍ରଗତିରେ ନାନାପ୍ରକାର ଅବସ୍ଥା ପରିଲକ୍ଷିତ ହୁଏ । ଗୋଟିଏ ଅବସ୍ଥାରେ କେତେକ ସମସ୍ୟା ତର୍କ ବିତର୍କ ଚିନ୍ତାର ଆଲୋଚନା ମୂଳକ ବସ୍ତୁ ହିସାବରେ ଥାଏ ତ ଅନ୍ୟ ଗୋଟିଏ ପରିସ୍ଥିତିରେ ତାହା ବାସ୍ତବତାମୂଳକ ସମସ୍ୟା ହିସାବରେ ଆସି ମୁହାଁମୁହିଁ ଠିଆହୁଏ ଏବଂ ଖୁବ୍ ଶୀଘ୍ର ତାର ଉପଯୁକ୍ତ ସମାଧାନ କରିବା ଦରକାର ହୋଇପଡ଼େ ଏବଂ ଏହି ସମାଧାନ ଉପରେ ସମାଜର ଅଗ୍ରଗତି ବହୁତ ବେଶି ନିର୍ଭର କରିଥାଏ । ସ୍ତ୍ରୀ ସ୍ୱାଧୀନତା ସମସ୍ୟା ବର୍ତ୍ତମାନ ଏହି ଅବସ୍ଥାରେ ଆମମାନଙ୍କ ଆଗରେ ଆସି ଦେଖାଦେଇଛି । ଏହାର ଉପଯୁକ୍ତ

ପ୍ରକାର ଅନ୍ତ ଶାନ୍ତି ଦେବା ଦରକାର, ତା ନ ହେଲେ ଦେଶ ପତନକୁ ଦଟିପିବାର ଯଥେଷ୍ଟ ଆଶଙ୍କା ଅଛି ।

ମାନବିକତା ଦୃଷ୍ଟିରୁ ସ୍ତ୍ରୀମାନେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛନ୍ତି ସେଥିରୁ ମୁକ୍ତିଲାଭ କରିବା ଉଚିତ । ଗୋଟିଏ ଶ୍ରେଣୀର ସ୍ତ୍ରୀଲୋକମାନେ ଏପରି ବନ୍ଦୀ ଅବସ୍ଥାରେ ଅଛନ୍ତି, ଯେ ପଶୁପକ୍ଷୀଙ୍କ ଠାରୁ ମଧ୍ୟ ସେମାନଙ୍କର ଅବସ୍ଥା ହୀନ । ଗୋଟିଏ ପକ୍ଷୀକୁ ପିଞ୍ଜରାରେ ବନ୍ଦୀ ଥିବାର ଦେଖି ଯେଉଁ ଦୟାଶୀଳ ଲୋକେ ମହାନୁଭବ ପ୍ରକାଶ କରି ମୁକ୍ତ କରିଦେବା ପାଇଁ ଯୁକ୍ତି କରନ୍ତି, ସେମାନଙ୍କ ମଧ୍ୟରୁ ଅନେକ ସମୟରେ ସ୍ତ୍ରୀମାନଙ୍କୁ ଅସୂର୍ଯ୍ୟମ୍ପଶ୍ୟା ଭାବରେ ରଖିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଖୋଲା ଆକାଶ, ମୁକ୍ତବାୟୁ ଓ ଜଗତର ଜୀବନ ପ୍ରବାହରୁ ଏମାନଙ୍କୁ ଦୂରରେ ରଖା ହୋଇଥାଏ । ବାହ୍ୟ ଜଗତ ପ୍ରତି ମନୁଷ୍ୟୋଚିତ ଆଗ୍ରହକୁ ମଧ୍ୟ ଜୋର ଜବରଦସ୍ତି ଚାପି ମାରି ଦିଆଯାଏ । ପ୍ରତ୍ୟେକ ପରିବାର ଏମାନଙ୍କ ପାଇଁ ଗୋଟିଏ ଗୋଟିଏ ବନ୍ଦୀଶାଳା ଏବଂ ସ୍ୱାମୀ ଜେଲ୍ ରକ୍ଷକ । ଏପରିକି କେତେକ କ୍ଷେତ୍ରରେ ସ୍ୱାମୀ ବାହାରକୁ ଗଲାବେଳେ ଘର ବାହାରୁ ତାଲା ବନ୍ଦ କରି ଯାଆନ୍ତି । ମାନବିକତା ଓ ନୈତିକତା ଦୃଷ୍ଟିରୁ ଏହା ଭୟଙ୍କର ଅନ୍ୟାୟ । ମନୁଷ୍ୟୋଚିତ ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିବାର ନୈତିକ ଅଧିକାର ପୁରୁଷର ନାହିଁ, ତେଣୁ ଜୋର ଜବରଦସ୍ତ ଏପରି ଭାବରେ ରଖିବା ନାନା ଦୃଷ୍ଟିରୁ ନିନ୍ଦନୀୟ । ଖାଲି ସେତିକି ନୁହେଁ, ଯେଉଁ ସଙ୍କୀର୍ଣ୍ଣ ମନୋବୃତ୍ତି ଓ ଭୟ ଯୋଗୁଁ ପୁରୁଷମାନେ ସ୍ତ୍ରୀମାନଙ୍କୁ ଏପରି ଭାବରେ ବନ୍ଦୀକରି ରଖନ୍ତି, ତାର ଫଳରେ ସ୍ତ୍ରୀମାନଙ୍କର ମନ ବିଦ୍ରୋହ କରିବା ସ୍ୱାଭାବିକ । କିନ୍ତୁ ନାନା କାରଣରୁ ଏ ମନୋଭାବ ପ୍ରକାଶ୍ୟରେ ଦେଖା ନ ଯାଇ ଲୁକ୍କାୟିତ

ଭାବରେ ପ୍ରକାଶ ପାଇଥାଏ । ମନୁଷ୍ୟର ଆଗ୍ରହକୁ କେବେ ସମ୍ପୂର୍ଣ୍ଣ ନଷ୍ଟକରି ଦିଆଯାଇ ନ ପାରେ । ଗୋଟିଏ ପିଲାକୁ ଯଦି କୁହାଯାଏ ଯେ ଅମୁକ ଜିନିଷଟା ପାଖକୁ ତାର କେବେ ହେଲେ ଯିବା ଉଚିତ ନୁହେଁ, ତା ହେଲେ ସେଥିପ୍ରତି ତାର କୌତୂହଳ ଆହୁରି ବେଶୀ ବଢ଼ିଯିବ । ଯଦି ଜଣକୁ କୁହାଯାଏ ଯେ ଗୋଟିଏ ଘରର ଯେ କୌଣସି ବସ୍ତୁକୁ ସେ ପାଇପାରେ କିନ୍ତୁ ଗୋଟିଏ ତାଲା ବନ୍ଦ ଘରକୁ ସେ ସ୍ପର୍ଶ ସୁଦ୍ଧା ପାରିବ ନାହିଁ, ତା ହେଲେ ସେ ଘରପ୍ରତି ତାର କୌତୂହଳ କେତେ ବେଶୀ ବଢ଼ି ନ ଯିବ ! ସେହିପରି ଅନ୍ୟ ପୁରୁଷମାନଙ୍କ ପ୍ରତି ଏହିପରି ଗୋଟିଏ ମନୋଭାବ ସୃଷ୍ଟି କରିବା ଦ୍ୱାରା ସ୍ତ୍ରୀମାନଙ୍କର କୌତୂହଳ ସେମାନଙ୍କ ପ୍ରତି ବର୍ଦ୍ଧିତ ହୋଇଯାଏ । ସେମାନେ ସାମାନ୍ୟ ସୁଯୋଗ ପାଇଲେ ତାର ସୁବିଧା ନିଅନ୍ତି—ତାଲାବନ୍ଦ ଘରର ଝରକା ପାଖରେ ଅନେକାଂଶ ସମୟ ଠିଆହୋଇ ବାହାରକୁ ଚାହିଁବା ପ୍ରବୃତ୍ତି ହେବା ସ୍ୱାଭାବିକ ଏବଂ ଅନେକ ସମୟରେ ଅଲଗା ଭାବ ପାଖରେ ରହିବା ମଧ୍ୟ ଅସମ୍ଭବ ନୁହେଁ । ତେଣୁ ଏପରି ଭାବରେ ବନ୍ଦକରି ରଖିବା ଦ୍ୱାରା ସ୍ତ୍ରୀମାନଙ୍କ ଭିତରେ ବ୍ୟଭିଚାର ବଢ଼ିବା ଯେ ସୁନିଶ୍ଚିତ ଏଥିରେ ସନ୍ଦେହ ନାହିଁ । ଯେତେବେଳେ ପ୍ରତ୍ୟେକ ସ୍ୱାମୀର ଗୋଟିଏ ଆତ୍ମମନୋଭାବ ହୁଏ ଯେ ତାର ସ୍ତ୍ରୀର ସତୀତ୍ୱକୁ ସେ ତାଲା ବନ୍ଦକରି ଅତି ଅନ୍ତଃପୁରରେ ରଖି ପାରନ୍ତି ଏବଂ ସମାଜରେ ଯେତେକ ବ୍ୟଭିଚାରର କଥା ଶୁଣାଯାଏ, ସେ ସବୁ ଅନ୍ୟର ସ୍ତ୍ରୀ ଯୋଗୁଁ ଘଟିଥାଏ । ସ୍ତ୍ରୀ ପୁରୁଷଙ୍କ ଭିତରେ ଯୌନ ସଙ୍ଗମ କିମ୍ବା ଏତେବେଶି ରୂପରେ ସମାପ୍ତ ହୋଇଥାଏ ଯେ, ସମସ୍ତଙ୍କର ଏହି ଧାରଣା ପୋଷଣ କରିବାରେ ଅସୁବିଧା ହୁଏନାହିଁ । ଅନେକ ପୁରୁଷଙ୍କର ନିଜ ସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀ ସହିତ ଗୁପ୍ତ ସମ୍ପର୍କ ଥିଲେ

ସୁଖା ଜଳ ପୀଇ ମଣିଷ ସନ୍ତୁଷ୍ଟ ଥାଏ—ଏହି ଏକ ଧାରଣା ଏପରି ଅପୌରୁଷେୟ ଭାବରେ ଚଳି ଆସୁଅଛି ଯେ, କେହି ଏହା ବିରୁଦ୍ଧରେ ପଦେ କହିଲେ କୋଟି କୋଟି ଲୋକ ରାଗରେ ଅଗ୍ନିଶର୍ମା ହୋଇ ପଡ଼ନ୍ତି । ତା ମାନେ ସତ୍ୟର ମୁଖାଦାବି ଜଳ ମନର ଅନ୍ଧାର କୋଣରୁ ଟାଣିବାକୁ ସେମାନେ ଭୟ କରନ୍ତି । ଏ ପ୍ରକାର ମିଥ୍ୟା ବିଶ୍ୱାସ ସୃଷ୍ଟି ଦ୍ୱାରା ବ୍ୟକ୍ତିଗତ ସନ୍ତୋଷ ଲାଭ କରି ମୂର୍ଖର ସ୍ୱର୍ଗ ରାଜ୍ୟରେ ବିଚରଣ କରିବା ପାଇଁ ସମାଜର ଏତେ ବେଶୀ କ୍ଷତି ଘଟାଇବା ଆଦୌ ବାଞ୍ଛନୀୟ ନୁହେଁ । ବରଂ ସ୍ତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ସ୍ୱାଧୀନତା ଦେଲେ ସେମାନେ ପିଲାଦିନରୁ ପୁରୁଷମାନଙ୍କ ସହିତ ମିଶିବା ଦ୍ୱାରା ସେମାନଙ୍କର ଅଯଥା କୌତୂହଳ ଏପରି ଅସ୍ୱାଭାବିକ ଭାବରେ ପୁରୁଷମାନଙ୍କ ବିଷୟରେ ଦେଖାଦେବ ନାହିଁ । ଅନେକେ ଭାବନ୍ତି ଯେ ପୁରୁଷ ସହିତ ଖୁବ୍ ବେଶୀ ମିଶିବା ଦ୍ୱାରା ଝିଅମାନଙ୍କର ଯୌନ ପିପାସା ବଢ଼ିଯାଏ, କିନ୍ତୁ ଆଦୌ ନ ମିଶିବା ଦ୍ୱାରା ହିଁ ଯୌନ ସଙ୍ଗମର ଅତୃପ୍ତ ଇଚ୍ଛା ନିବାରଣ ପୁରୁଷ ପ୍ରତି ଅତି ପ୍ରବଳ ବେଗରେ ଆକର୍ଷିତ ହୋଇଥାଏ ଓ ଏହି କାରଣ ଯୋଗୁଁ ନାନାପ୍ରକାର ଅବୈଧ ଓ ଅସାମାଜିକ କାର୍ଯ୍ୟରେ ମନ ବ୍ୟାପୃତ ହୋଇପଡ଼େ—ଅତ୍ୟଧିକ ମାମାଜିକ ଓ ନୈତିକ ଭୟଦ୍ୱାରା ଚାପିଲା ପରି ଓ ନାନାପ୍ରକାର ମାନସିକ ବିକୃତି ମଧ୍ୟ ଦେଖାଦେଇଥାଏ—ଯୌବନ ସ୍ରୋତ ସରଳ ଓ ସ୍ୱାସ୍ଥ୍ୟକର ମାର୍ଗରେ ପରିଚାଳିତ ନ ହୋଇ ଅବରୁଦ୍ଧ ହୋଇ ପଡ଼ିଲେ ଅସଂଖ୍ୟ ବର୍ଦ୍ଧମାନ ଗନ୍ଧ ଗହ୍ୱର ପଙ୍କନାଳରେ ପରିଣତ ହୋଇଯାଏ ଏବଂ ଏହା ସମଗ୍ର ସମାଜର ସ୍ୱାସ୍ଥ୍ୟକୁ ନଷ୍ଟ କରିଦିଏ । ଏହାର ଅର୍ଥ ନୁହେଁ ଯେ ସମାଜରେ ଅବାଧ ଯୌନମିଳନ ଚାଲିବା ଉଚିତ, କିନ୍ତୁ ସ୍ୱାଭାବିକ ସାମାଜିକ ମିଳନରେ ବାଧା ରହିବା ଉଚିତ ନୁହେଁ ।

ମାନସାସ୍ୟ ନୈତିକତା ତଥା ଅନ୍ୟାନ୍ୟ ଦୃଷ୍ଟିରୁ ମଧ୍ୟ ସ୍ତ୍ରୀ ସ୍ୱାଧୀନତା ସମାଜ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ । ମାନବ ଶିଶୁ ମା, ବାପ ଉପରେ ଅନେକ ବେଶି ଓ ଅନେକ ଦିନ ଧରି ନିର୍ଭର କରିଥାଏ; ଅନ୍ୟାନ୍ୟ ଜନ୍ତୁମାନେ ସେପରି ନିର୍ଭର କରନ୍ତି ନାହିଁ । ଉନ୍ନତ ବୁଦ୍ଧିର ପୂର୍ଣ୍ଣ ବିକାଶ ଓ ଜଟିଳ ସାମାଜିକ ଜୀବନ ସଙ୍ଗେ ତାଳ ଦେଇ ଚଳିବା ଲାଗି ମନୁଷ୍ୟ ଶିଶୁକୁ ବହୁବର୍ଷ ଲାଗିଯାଏ । ତେଣୁ ମା ବାପାଙ୍କ ସ୍ନେହ ସାହଚର୍ଯ୍ୟରେ ରହି ତାକୁ ଏ ସବୁ ଶିଖିବା ଦରକାର । ବିଶେଷତଃ ମା ଉପରେ ତାର ଶିଶୁ ବହୁତ ବେଶି ନିର୍ଭର କରିଥାଏ । ମା ଯଦି ପିଲାକୁ ଚଳିବାର ସଙ୍କେତ ପ୍ରଦାନ ନ କରେ, ତା ହେଲେ ପିଲା ବଡ଼ ହେଲାପରେ ନାନା ଅସାମାଜିକ କାର୍ଯ୍ୟରେ ବ୍ୟାପୃତ ହୋଇପାରେ । ତେଣୁ ମାର ଶିକ୍ଷା ଯେ କେତେ ବେଶି ଦରକାର ତାହା ସହଜରେ ଅନୁମେୟ । ଉପଯୁକ୍ତ ଶିକ୍ଷା ନ ପାଇବାରୁ ନିଜର ତଥା ଶିଶୁର ସ୍ୱାସ୍ଥ୍ୟହାନି ହେବାର ମଧ୍ୟ ଯଥେଷ୍ଟ କାରଣ ରହିଛି । ସେଥିପାଇଁ ଆମେରିକାରେ ଶତକଡ଼ା ଦଶାଧିକ—ସଦ୍ୟ ନବଜାତ ଶିଶୁ ଓ ବହୁ ଗର୍ଭବତୀ ସ୍ତ୍ରୀ ପ୍ରାଣ ତ୍ୟାଗ କରୁଥିଲାବେଳେ ଇଂଲଣ୍ଡରେ ଶତକଡ଼ା ମାତ୍ର ଦେଢ଼ ଜଣ ଏପରି ଭାବରେ ମୃତ୍ୟୁ ମୁଖରେ ପଡ଼ନ୍ତି । ତେଣୁ ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତା ବିନା କୌଣସି ସାମାଜିକ ସ୍ୱାସ୍ଥ୍ୟ ଯୋଜନା ଅସମ୍ଭବ ।

ଶିଶୁର ସ୍ୱାସ୍ଥ୍ୟକର ସାମାଜିକ ବିକାଶ ଲାଗି ଦ୍ୱନ୍ଦ୍ୱ ରହିତ ପାରିବାରିକ ଜୀବନ ନିତାନ୍ତ ଆବଶ୍ୟକ, କିନ୍ତୁ ସ୍ତ୍ରୀ ପୁରୁଷ ମଧ୍ୟରେ ଏ ପ୍ରକାର ପାର୍ଥକ୍ୟ ଥିବା ଯୋଗୁଁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମାନସିକ ଐକ୍ୟ ପ୍ରାପ୍ତ ନ ଥାଏ । ସ୍ୱାମୀର ଚିନ୍ତାଧାରା ସ୍ତ୍ରୀର ଭାବନା ରାଜ୍ୟଠାରୁ ସମ୍ପୂର୍ଣ୍ଣ ଅଲଗା—ସ୍ୱାମୀ ଦିନ ତମାମ ରାଜନୀତି, ଅର୍ଥନୀତି, ସମାଜନୀତି, ସଂସ୍କୃତି, କଳା ବିଜ୍ଞାନ ପ୍ରଭୃତି ଜ୍ଞାନ

ରାଜ୍ୟରେ ଗବେଷଣା ଦଣ୍ଡ ଧରିବାକୁ ନପାରିଲେ କେବଳ ସ୍ତ୍ରୀ ଦଉର ଝୁଲନ୍ତ କଳ ବନ୍ଧ ବନ୍ଦ ଥାଏ କିମ୍ବା ଅନ୍ଧାର ଘର ଭିତରେ ବସି ମାଳ ଗଣ୍ଠାଉଥାଏ କିମ୍ବା ସ୍ତ୍ରୀର ପୁଷ୍ଟାଙ୍ଗ ସମ୍ବନ୍ଧ ଥିବା ଗଣେଦାସ କଳ ଚଳଚ୍ଚିତ୍ର କରି ଆମୋଦ ପାଉଥାଏ । ତେଣୁ ସ୍ୱାମୀ ସ୍ତ୍ରୀ ଭିତରେ ମନ ନ ମିଳିବା ସ୍ୱାଭାବିକ । ଜଣେ ଅନ୍ୟ ଜଣଠାରୁ କୌଣସି ପ୍ରେରଣା ପାଇପାରେ ନା—ସ୍ତ୍ରୀ ମଧ୍ୟ ଉତ୍ସାହରେ ତାର ସାଙ୍ଗ ସ୍ତ୍ରୀଲୋକର ପିଲାଝିଅ, ବାହାଘର ବିଷୟରେ ଗପିବସିଲା ବେଳକୁ ସ୍ୱାମୀ ଦେଶର ପରିସ୍ଥିତି ବା ଆଣବିକ ଶକ୍ତିର ବ୍ୟବହାର ବିଷୟରେ ଭାବୁଥାଏ—ଫଳରେ ମାନସିକ ଐକ୍ୟ ଓ ପରସ୍ପର କାର୍ଯ୍ୟ ପ୍ରତି ପ୍ରେରଣା ଓ ଉତ୍ସାହ ଅଭାବରେ ମନୋମାଳିନ୍ୟ ସୃଷ୍ଟି ହୁଏ—ତେଣୁ ତାହାର ଉପଯୁକ୍ତ ଜୀବନସାଥି ହୋଇପାରନ୍ତି ନାହିଁ । ସ୍ୱାମୀ ଯାହା ଭାବେ ସ୍ତ୍ରୀର ଭାବନା ଶକ୍ତିର ବାହାରେ ଏବଂ ସ୍ତ୍ରୀ ଯାହା ଭାବେ ସେଥିରେ ସ୍ୱାମୀର ଆଗ୍ରହ ନ ଥାଏ । ଏପରି ପରିସ୍ଥିତିରେ ଦମ୍ପତିର ଭିତରେ ପ୍ରେମ କେବେହେଲେ ହୋଇ ପାରେନା । ଅବଶ୍ୟ ଏହା ଆମ ଦେଶର ବୁଦ୍ଧିଜୀବୀ ଓ ଶିକ୍ଷିତ ଶ୍ରେଣୀ ଭିତରେହିଁ ପ୍ରଧାନତଃ ଦେଖାଯାଏ । ଆମେମାନେ ଆମ ଦେଶର ଦାମ୍ପତ୍ୟ ଜୀବନ ବିଷୟରେ ଯେତେ ଗପ କରୁନା କାହିଁକି, ଯୌନ ସମ୍ପର୍କ ଛଡ଼ା ସ୍ୱାମୀ, ସ୍ତ୍ରୀ ଭିତରେ ଆଉ କୌଣସି ପ୍ରକାର ମିଳନ ନ ଥିବା ଯୋଗୁ ସ୍ୱାମୀ ସ୍ତ୍ରୀ ଭିତରେ ପ୍ରକୃତ ପ୍ରେମ କୌଣସି ମତେ ସମ୍ଭବ ହୋଇପାରେନା । ସ୍ତ୍ରୀମାନଙ୍କୁ ଖୁସି କରାଇବା ପାଇଁ 'ଅର୍ଦ୍ଧାଙ୍ଗିନୀ' 'ପ୍ରାଣସଙ୍ଗିନୀ' ପ୍ରଭୃତି ଗଦଗଦ ଶ୍ରୁତି ମଧୁର ଶବ୍ଦାବଳୀ ପ୍ରୟୋଗ କଲେ ସୁଦ୍ଧା ସେମାନେ ଯେ ସବୁ କ୍ଷେତ୍ରରେ ପୁରୁଷର ସମାନସ୍ତର ନୁହନ୍ତି, ଏଥିରେ ସନ୍ଦେହ ନାହିଁ । ଏହି ପାରିବାରିକ ଦ୍ୱନ୍ଦ୍ୱ ଓ ମାନସିକ ଅସମାନତା ଶିକ୍ଷାର ଜନକ

ପାଳନ ଲାଗି ଉପଯୁକ୍ତ ଶିକ୍ଷା ଦରକାର । କୋମଳମତି ଶିଶୁ ବୁଝି ପାରେନା ତାର ଆଦର୍ଶ କଣ ଏବଂ କାହାକୁ ସେ ଅନୁକରଣ କରିବ । ଏହି ଦ୍ୱନ୍ଦ୍ୱମୟ ପରିସ୍ଥିତିରେ ଅନେକ ସମୟରେ ସେ ହତୋତ୍ସାହ ହୋଇ ଭାଙ୍ଗି ପଡ଼େ ଏବଂ କୌଣସି ବଳିଷ୍ଠ ଆଦର୍ଶ ମନକ୍ଷେତ୍ରରେ ନ ଥିବାରୁ କର୍ତ୍ତବ୍ୟ ପଥରେ ଠିକ୍ ଭାବରେ ଗତି କରି ପାରେନା । ଆମ ସମାଜରେ ଯୁବକମାନଙ୍କର ଏ ଯେଉଁ ଅନିଶ୍ଚିତ ଆଦର୍ଶ ଓ ହତୋତ୍ସାହ ଦେଖା ଦେଉଛି, ଆମର ଅସମାନ ପାରିବାରିକ ଜୀବନ ତାର ଗୋଟିଏ ପ୍ରଧାନ କାରଣ ।

ଅର୍ଥନୈତିକ ଦୃଷ୍ଟିକୋଣରୁ ସ୍ତ୍ରୀ ସ୍ୱାଧୀନତା ଏକାନ୍ତ ଦରକାର । ସ୍ତ୍ରୀମାନେ ଆର୍ଥିକ ଓ ଶିକ୍ଷାଗତ ସ୍ୱାଧୀନତା ପାଇ ନ ଥିବାରୁ ଦେଶର ଉତ୍ପାଦନ ବୃଦ୍ଧିରେ ଉଲ୍ଲେଖ ସାହାଯ୍ୟ କରି ପାରୁନାହାନ୍ତି । ନଳକ୍ଷେତ୍ରର ସ୍ତ୍ରୀମାନେ ମଜୁରିକାମ କରିବା ଛଡ଼ା ଉଚ୍ଚ ଧରଣର ଉତ୍ପାଦନ ପ୍ରଣାଳୀରେ ଏମାନେ କୌଣସି ଭାଗନେଇ ପାରୁ ନାହାନ୍ତି । ଜନ ସଂଖ୍ୟାର ଅଧାଅଧି ଲୋକ ଏପରି ଭାବରେ ଉତ୍ପାଦନ ପ୍ରଣାଳୀର ବାହାରେ ରହି ଯାଉଥିବାରୁ ଦେଶର ସର୍ବମୋଟ ଉତ୍ପାଦନ ପରିମାଣ ବହୁତ କମ୍ ହେବା ସ୍ୱାଭାବିକ । ତେଣୁ କୌଣସି ଦେଶ ଏମାନଙ୍କ ବିନା ସାହାଯ୍ୟରେ ଧନୀ ହେବାର ସମ୍ଭାବନା ନାହିଁ । ତା ଛଡ଼ା ମଧ୍ୟ ସ୍ତ୍ରୀମାନଙ୍କର ଅର୍ଥନୈତିକ ଉତ୍ପାଦିକା ଶକ୍ତି ବୃଦ୍ଧି ନ ପାଇଲେ ସେମାନେ ସମ୍ପୂର୍ଣ୍ଣରୂପେ ସ୍ୱାଧୀନ ହୋଇ ପାରିବେ ନାହିଁ ଏବଂ ତା ଫଳରେ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପୁରୁଷ-ମାନଙ୍କ ପରି ସମାନ ସୁଯୋଗ ଓ ସୁବିଧା ପାଇପାରିବେ ନାହିଁ ।

ଅର୍ଥନୈତିକ ଉତ୍ପାଦନ ଶକ୍ତି ଓ ଅର୍ଥନୈତିକ ସ୍ୱାଧୀନତା ଉପରେ ଘନିଷ୍ଠ ସମ୍ପର୍କ ରହିଥିବା ସ୍ଥଳେ ପ୍ରଥମଶ୍ରେଣୀର ଉପଯୁକ୍ତ କ୍ଷମତା ହାସଲ ନ କରିବା ପାଏ ଅନ୍ୟ କ୍ଷେତ୍ରରେ ସମ୍ପୂର୍ଣ୍ଣ ସୁବିଧା ପାଇବା ସମ୍ଭବ ନୁହେଁ । ତେଣୁ ଏହା ଏମାନଙ୍କ ପକ୍ଷରେ ଗୋଟିଏ ପ୍ରଧାନ ସମସ୍ୟା ।

ମନୁଷ୍ୟ ସମାଜର ଇତିହାସରେ ଏପରି ଅବସ୍ଥା ଆସେ, ଯେତେବେଳେ କେତେଗୁଡ଼ିଏ ପଥ ଗ୍ରହଣ କରିବା ଅନିବାର୍ଯ୍ୟ ହୋଇପଡ଼େ—ଯେଉଁ ସମାଜ ଜନ୍ମଦେଇ ଚଳେ କୌଣସି ମତକୁ ଅବହେଳା କରି ଆସୁଥାଏ, ହଠାତ୍ ପରିବର୍ତ୍ତିତ ପରିସ୍ଥିତିରେ ତାକୁ ଗ୍ରହଣ କରିବାକୁ ବାଧ୍ୟ ହୁଏ । ତା ଛଡ଼ା ତାର ଆଉ ଅନ୍ୟ ଉପାୟ ନ ଥାଏ । ଭାରତବର୍ଷରେ କାହିଁକି, ପୃଥିବୀର ଯେ କୌଣସି ଦେଶରେ ସ୍ତ୍ରୀ ସ୍ୱାଧୀନତା ପନ୍ଥାକୁ ବର୍ତ୍ତମାନ ପର୍ଯ୍ୟନ୍ତ ଗ୍ରହଣ କରିବାକୁ ହେବ, ତା ନ ହେଲେ ସେ ଦେଶର ଉନ୍ନତି ଅସମ୍ଭବ । ଦେଶକୁ ମୁକ୍ତ ପଥରେ ସୁପ୍ରଯୋଜିତ ଭାବରେ ପରିଚାଳିତ କରାଇବାକୁ ହେଲେ ସ୍ତ୍ରୀଲୋକମାନଙ୍କର ପୂର୍ଣ୍ଣ ସହଯୋଗ ବିନା ଏହା ସମ୍ଭବ ହେବ ନାହିଁ । ତା ଛଡ଼ା ମଧ୍ୟ ଆଜି କାଲିର ପରିସ୍ଥିତିରେ ଦେଶର ପ୍ରତ୍ୟେକ ବ୍ୟକ୍ତିକୁ—କି ସ୍ତ୍ରୀ—କି ପୁରୁଷ—ଜାତୀୟ ଭାବରେ ଜାଗ୍ରତ କରି ଦେଶର କଲ୍ୟାଣ ସକାଶେ ସାହସର ସହିତ ପ୍ରାଣ ଷଙ୍କଯୋଗ କରିବା ପାଇଁ ଶିକ୍ଷା ଦେବା ଉଚିତ । ସମସ୍ତେ ଏ ପ୍ରକାର ଶିକ୍ଷା ନ ପାଇଲେ, ଯେ କୌଣସି ବଡ଼ ଦେଶ ଦେଖନ୍ତୁ ନା କାହିଁକି, ଉପରୋକ୍ତ ପ୍ରକାରେ ଗଠିତ ହୋଇଥିବା ଗୋଟିଏ ଶ୍ରେଷ୍ଠଜାତି ଅଳ୍ପ ସମୟରେ ତାକୁ ପରାସ୍ତ କରିଦେବ । ଗତ ମହାଯୁଦ୍ଧରେ ଇଂଲଣ୍ଡ,

ରୁଷିଆ ପ୍ରଭୃତି ଦେଶର ସ୍ତ୍ରୀ ଲୋକମାନେ ଯାହା କରିଛନ୍ତି, ତାହା ଆମମାନଙ୍କ ପକ୍ଷରେ କଳ୍ପନାତୀତ । ରୁଷିଆରେ ଗୋଟିଏ ଗୋଟିଏ ଅଞ୍ଚଳ ପୁରାପୂରି ସ୍ତ୍ରୀଶାସିତ ହୋଇ ପଡ଼ିଥିଲେ ରୁଷ ସ୍ତ୍ରୀ ଲୋକମାନେ ଟ୍ରାକ୍ଟର, ମଟର ଚଳାଇ କୃଷି କରିବା—ସ୍କୁଲ ଡାକ୍ତରଖାନା ଚଳାଇବା ଠାରୁ ଆରମ୍ଭ କରି ଶତ୍ରୁ ଭିତରେ ରହି ଗରିଲାଯୁଦ୍ଧ ଏବଂ ପ୍ରତ୍ୟକ୍ଷ ଟ୍ୟାଙ୍କ ଓ ଆକାଶ ପଥରେ ବ୍ୟୋମଯାନ ଚଳାଇ ଯୁଦ୍ଧ ପର୍ଯ୍ୟନ୍ତ ଚଳାଇ ପାରିଥିଲେ । ଜନସଂଖ୍ୟାର ଅର୍ଦ୍ଧେକ ସ୍ତ୍ରୀ ଏପରି ଭାବରେ ଅତି ପ୍ରୟୋଜନୀୟ କାମ କରିବା ଦ୍ୱାରାହିଁ ରୁଷ୍‌ଜାତି ଯୁଦ୍ଧରେ ଜୟୀ ହୋଇ ପାରିଥିଲା । ରୁଷିଆରେ ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ଅତି ଉଚ୍ଚସ୍ତରର ହୋଇ ପାରିଥିବାରୁ ଏ ପ୍ରକାର ସହଯୋଗ ସମ୍ଭବ ହୋଇ ପାରିଲା । ତା ନ ହୋଇଥିଲେ ହୁଏତ ରୁଷିଆ ଅତି ଦୁର୍ଦ୍ଧର୍ଷ ହିଟଲରର ଶକ୍ତି ଆଗରେ ସମ୍ପୂର୍ଣ୍ଣ ଲୋପ ପାଇ ଯାଇଥାଆନ୍ତା । ଭାରତବର୍ଷକୁ ଯଦି କେହି ବାହ୍ୟଶକ୍ତି ଆକ୍ରମଣ କରେ, ତା ହେଲେ ତାର ଅବସ୍ଥା କଣ ହେବ ? ଯୁଦ୍ଧକ୍ଷେତ୍ରରେ ସୈନ୍ୟମାନେ ପରାସ୍ତ ହେଲାପରେ ଶତ୍ରୁ ସୈନ୍ୟ ଗ୍ରାମ, ସହର ସବୁ ବିନା ବାଧାରେ ଦଖଲ କରିପାରିବେ । ବର୍ତ୍ତମାନ ପରିସ୍ଥିତିରେ ଆମଦେଶର ନିରକ୍ଷର, କୁସଂସ୍କାରଗ୍ରସ୍ତ ସ୍ତ୍ରୀ ଜାତି ଏତେ ଦୁର୍ବଳ ଓ ଦୁନିଆ ବିଷୟରେ ଏତେ ଅନଭିଜ୍ଞ ଯେ ଜାତୀୟ ଭାବର ତାତ୍ପର୍ଯ୍ୟ ବା ଦେଶକୁ ଶତ୍ରୁ ହାତରୁ ଉଦ୍ଧାର କରିବାର ମର୍ଯ୍ୟାଦା ବୁଝିବା ତା ପକ୍ଷରେ ଅସମ୍ଭବ * । ଆଧୁନିକ ଯାନ୍ତ୍ରିକ ଯୁଗରେ

* ଅବଶ୍ୟ ଆମ ଦେଶର ଅଧିକାଂଶ ପୁରୁଷ ମଧ୍ୟ ଏମାନଙ୍କଠାରୁ ଖୁବ୍ ଉନ୍ନତର ନାହାନ୍ତି । କିନ୍ତୁ ପୁରୁଷର ଶିକ୍ଷା ଯେପରି ଉନ୍ନତି ଚେଷ୍ଟା ହେଉଛି, ମାତ୍ର ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ବିଷୟରେ ଆମମାନଙ୍କ ଭିତରେ ବହୁ ମତ ଦ୍ୱୈଧ ଅଛି ।

ଯୁଦ୍ଧ, ଦେଶର ସମଗ୍ର ଜନତା ଉନ୍ନତିରେ ପ୍ରୟୋଗ କରନ୍ତୁ ଏ, ତେଣୁ ଅନେକ ଲୋକ ଏପରି ଭାବରେ ଅଶିକ୍ଷିତା ରହିଗଲେ ଦେଶପକ୍ଷରେ ଏହା ବଡ଼ ମାରାତ୍ମକ । ଦୁଇଟି ସାହସର ସହିତ ଆମମାନଙ୍କୁ ସମସ୍ତ ପ୍ରକାର କୁସଂସ୍କାର ଉନ୍ମୁକ୍ତରେ ଯୁଦ୍ଧ କରି ସ୍ତ୍ରୀ ଜାତିକୁ ପୂର୍ଣ୍ଣ ସ୍ୱାଧୀନତା ଦେବାକୁ ହେବ—ତା ନ ହେଲେ ଆମମାନଙ୍କୁ ଅନ୍ୟ ଦେଶର ପଦାନତ ହୋଇ ରହିବାକୁ ହେବ । ବର୍ତ୍ତମାନର ଆନ୍ତର୍ଜାତୀୟ ପରିସ୍ଥିତିରେ ଏହା ଛଡ଼ା ଅନ୍ୟ ଉପାୟ ନାହିଁ, ତେଣୁ ଏହିକ୍ଷଣି ଏହି ସମସ୍ୟାଟି ଆମ ଯୁବକଙ୍କ ସମ୍ମୁଖରେ ଅଲୋଚ୍ୟ ବିଷୟ ବସ୍ତୁ ହୋଇ ରହିନାହିଁ ।

ଅନେକେ ସମ୍ପୂର୍ଣ୍ଣ ସ୍ତ୍ରୀ ସ୍ୱାଧୀନତାର ବିରୋଧ କରି କହିବେ ଯେ, ଘରର ସ୍ତ୍ରୀମାନେ ଯଦି ବାହାରେ ପୁରୁଷମାନଙ୍କ ପରି ସବୁପ୍ରକାର କାମ କରିବେ, ତା ହେଲେ ପାରିବାରିକ ଜୀବନ ଏକାବେଳକେ ଲୋପ ପାଇଯିବ । କିନ୍ତୁ ଏ ପ୍ରକାର ଯୁକ୍ତି ଭିତ୍ତିହୀନ ବୋଲି ମନେହୁଏ । ପ୍ରଥମତଃ ଆମ ଦେଶର ସ୍ତ୍ରୀ ପରାଧୀନତା ଜନିତ ପ୍ରଚଳିତ ପାରିବାରିକ ଜୀବନ ଏତେ ଦମ୍ଭ ପୂରିତ ଯେ, ତାକୁ ରଖି କିଛି ଲାଭ ନାହିଁ । ଦେହ ଉପରେ କାନ୍ଧପର ଏକୁ ବୋହୁମାନେ ରଖି ବାହାରେ ଜନର ସ୍ୱାସ୍ଥ୍ୟ ଉପରେ ବାହାବା ନେଇପରି ଅଚ୍ଛ ସଙ୍କୀର୍ଣ୍ଣ ଓ ଦୂଷିତ ପାରିବାରିକ ଅନୁଷ୍ଠାନ ଜାନିସାର ଯା ପରି ସାମାଜିକ ଜୀବନକୁ ନଷ୍ଟ କରି ଦେଉଥିଲାବେଳେ ଆମେ 'ହିନ୍ଦୁ ପରିବାର' 'ଘରଗୋଷ୍ଠୀ କୃଷ୍ଟି' ନାମରେ ଅଯଥା ବାହାବା ନେବାରେ ଲାଗିଛୁ । ତାଛଡ଼ା ମାନବିକତା ଦୃଷ୍ଟିରୁ ଦେଖିଲେ ମଧ୍ୟ ମନୁଷ୍ୟଙ୍କୁ ଏପରି କଦର୍ଯ୍ୟ ଭାବରେ ଘରଭିତରେ ବନ୍ଦ କରି ପୁରାତନ ସଂସ୍କୃତିକୁ ଧରି ରଖିବାରେ ଯେଉଁ ବାହାଦୁରି

ସେଥିରେ କିଛି ମୂଲ୍ୟ ନାହିଁ । ଗରିବ ଅଧିକାଂଶ ଦଳ ସୃଷ୍ଟି କରି ଦାନଶୀଳ ଲୋକଙ୍କର ମହତ୍ତ୍ୱ ବଢାଇବା ଯେପରି ଅନ୍ୟାୟ ନୀତି; ସ୍ତ୍ରୀ ଲୋକମାନଙ୍କୁ ଏହିରି ହୀନ ଅବସ୍ଥାରେ ଜବରଦସ୍ତ ଭାବରେ ରଖି ପରେ ପରିବାରର ଜୀବନ ଗଢ଼ିବା ସେହିପରି ଗର୍ହିତ । ଅନ୍ତ ପ୍ରକୃତରେ ବିଚାର କରି ଦେଖିଲେ ଜଣାପଡ଼ିବ ଯେ, ଉପଯୁକ୍ତ ଶିକ୍ଷା ଓ ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତ ସ୍ତ୍ରୀ ଜାତି ସାହାଯ୍ୟରେ ହିଁ ସୁସଂଗଠିତ ସାମାଜିକ ଜୀବନ ଓ ପ୍ରକୃତ ପରିବାରର ସୁଖ ଉପଭୋଗ କରିହେବ । ଭବିଷ୍ୟତ ଶ୍ରେଣୀହୀନ ସମାଜ ବନ୍ଧନ କ୍ଷେତ୍ରରେ ଦକ୍ଷତା ହାସଲ କରିଥିବା ଓ ଉପଯୁକ୍ତ ଶିକ୍ଷା ପାଇଥିବା ନରନାରୀଙ୍କର ସମଷ୍ଟିଗତ ଚେଷ୍ଟା ଦ୍ୱାରା ହିଁ ପରିଚାଳିତ ହେବ, ସେଥି ସ୍ତ୍ରୀମାନେ ପୁରୁଷମାନଙ୍କ ପରି ଶିକ୍ଷିତ ଏବଂ ବନ୍ଧନ କ୍ଷେତ୍ରରେ ସମାନ ପରିମାଣରେ ଦକ୍ଷତା ହାସଲ କରିପାରିବେ—ସମସ୍ତେ ସବୁ ପ୍ରକାର କାମ କରି ପାରିବାର ଶକ୍ତି ଓ ଅଧିକାର ହାସଲ କରିବେ । ଫଳରେ ସ୍ତ୍ରୀ ମଧ୍ୟ ପୁରୁଷ ପରି ଯେ କୌଣସି କାମ କରିପାରିବ —ଯେ କୌଣସି ବୃତ୍ତି କରିପାରିବ । ସ୍ୱାମୀ ସ୍ତ୍ରୀ ଉଭୟେ ସକାଳ ବେଳେ ଉଠି ଛୁଆ ପିଲାଙ୍କୁ ନେଇ ବାହାରିବେ ଅଫିସ୍‌କୁ କମ୍ବା କାରଖାନାକୁ—ସେଠାରେ ସୁଦକ୍ଷ ନର୍ସ, ଡାକ୍ତର ଓ ମନସ୍ତତ୍ତ୍ୱବିତ୍‌ଙ୍କ ଦ୍ୱାରା ପରିଚାଳିତ ନାର୍ସେରିରେ ( ଶିଶୁ ପିଲାଙ୍କ ପାଇଁ ସମସ୍ତ ପ୍ରକାର ଶିକ୍ଷା ଓ ଖେଳର ବ୍ୟବସ୍ଥା ଥିବା ଛୋଟିଏ ପ୍ରକାର ସ୍କୁଲ ) ପିଲାଙ୍କୁ ଛାଡ଼ି କାମରେ ବାହାରିବେ । କାମଶେଷ ହେଲାପରେ ପିଲାମାନଙ୍କୁ ନେଇ ଫେରିବେ ଘରକୁ । ତା ଦ୍ୱାରା ବରଂ ବାପମାଙ୍କର ସନ୍ତାନ ସ୍ନେହ ଅଧିକ ହେବ । କାରଣ ବର୍ତ୍ତମାନ ସାଧାରଣ ମା ପାଖରେ ପିଲାମାନେ ରହିବା ଦ୍ୱାରା ମା ମାନେ ବିରକ୍ତ ହୋଇ ଉଠନ୍ତି ଏବଂ ପିଲାମାନଙ୍କ ମାରିବାକୁ ମଧ୍ୟ

ତୃଷ୍ଣାବୋଧ କରନ୍ତି ନାହିଁ ଏବଂ ଏପରି ବିରକ୍ତଭାବ ଆସିବା ମଧ୍ୟ ସ୍ୱାଭାବିକ । ତା ଛଡ଼ା ସେହି ଏକ ଶ୍ରେଣୀ ପରିସ୍ଥିତିରେ ରହିରହି ପିଲାର ମାନସିକ ଅବସ୍ଥା ମଧ୍ୟ ଭଲ ରହେନା । ପିଲାମାନେ ଦଶଟାରୁ ପାଞ୍ଚଟା ପର୍ଯ୍ୟନ୍ତ ବନ୍ଧୁ ପିଲାଙ୍କ ମଧ୍ୟରେ ରହି ଅନେକ ରକମର ଖେଳନା ନେଇ ଖେଳିବା ଦ୍ୱାରା ସେମାନଙ୍କର ମନ ପ୍ରଫୁଲ୍ଲ ରହେ —ସାମାଜିକ ଚେତନା ଶକ୍ତି ବଢ଼େ—ଅନ୍ୟମାନଙ୍କ ସହିତ ମିଳିମିଶି ଚଳିବାକୁ ହୁଏ, ସେ ବିଷୟରେ ମଧ୍ୟ ସେମାନେ ଶିକ୍ଷା ପାଆନ୍ତି । ସେମାନଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ବିଷୟରେ ସୁଦକ୍ଷ ଡାକ୍ତର ଓ ମନସ୍ତତ୍ତ୍ୱବିତ୍‌ମାନେ ଯତ୍ନ ନିଅନ୍ତି । ପ୍ରତ୍ୟେକ ନାରୀଙ୍କର ବାପ ମା ହେବାର ଅଧିକାର ଅଛି, କିନ୍ତୁ ଶିଶୁପାଳନ ଲାଗି ଯେ ପ୍ରକାର ବିଶେଷ ଜ୍ଞାନ ଓ ନିପୁଣତା ଦରକାର, ତାହା ପ୍ରତ୍ୟେକଙ୍କର ନ ଥାଇପାରେ । କିନ୍ତୁ ପ୍ରତ୍ୟେକ ଶିଶୁର ଲାଳନ ପାଳନ ଉପରେ ସାରା ସମାଜର ଭବିଷ୍ୟତ୍ ନିର୍ଭର କରେ, ତେଣୁ ଜନ୍ମ ହେଲା ଦିନଠୁ ତାର ସ୍ୱାସ୍ଥ୍ୟ ଓ ମାନସିକ ବିକାଶ ଲାଗି ବୈଜ୍ଞାନିକ ପ୍ରଣାଳୀରେ ଚେଷ୍ଟା ହେବା ଦରକାର । ତା ହେଲେ ଯାଇ ଦେଶ ଉନ୍ନତ ଓ ସମାଜ ସୁସଂଗଠିତ ହୋଇ ପାରିବ । ଯୁବକ, ଯୁବତୀ ବଳିଷ୍ଠ ସାମାଜିକ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଉଠିବେ । ତେଣୁ ଏ ପ୍ରକାର ବ୍ୟବସ୍ଥା ହେଲେ ବାପ ମା ଓ ଶିଶୁ ସମସ୍ତେ ଉପକୃତ ହେବେ । ବୋଧହୁଏ କୌଣସି ବାପ ମା ଏପରି ଯୋଜନାରେ ଅସମ୍ମତ ହେବେ ନାହିଁ । ବରଂ ଭାବି ପାରନ୍ତି ଯେ ଏତେବଡ଼ ଯୋଜନାକୁ କାର୍ଯ୍ୟରେ ପରିଣତ କରିବା ସହଜ ନୁହେଁ । କିନ୍ତୁ ରୁଷିଆ ପ୍ରଭୃତି କେତେକ ଦେଶରେ ଏହା ସମ୍ଭବ ହୋଇ ପାରିଛି ଶୁଣିଲେ ହତୋ-ତ୍ସାହ ହେବାର କାରଣ ରହିବ ନାହିଁ । ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ବଢ଼ିବା ସାଙ୍ଗେ ସାଙ୍ଗେ ଏ ପ୍ରକାର ବ୍ୟବସ୍ଥା ନିଶ୍ଚୟ ହୋଇ ପାରିବ ।

ତା ନ ହେଲେ ସମ୍ପୂର୍ଣ୍ଣ ସ୍ତ୍ରୀ ସ୍ୱାଧୀନତା ହୋଇ ପାରିବ ନାହିଁ । କାମ ପରେ ବାପ ମା ପିଲାମାନଙ୍କୁ ନେଇ ଘରକୁ ଫେରିଲେ ପରେ ପାରିବାରିକ ଜୀବନ କଣ ମଧୁମୟ ହୋଇ ପାରିବ ନାହିଁ ? ଘରେ ଆବଦ୍ଧ ହୋଇ ରହିଥିବା ସ୍ତ୍ରୀ ଓ ମାଡ଼ ଗାଳି ଖାଇ ଖାଇ ଧୂଳିରେ ବସି ଖେଳୁଥିବା ମଇଳା ଛୁଆମାନଙ୍କୁ ବାହାର କାମରୁ ଫେରିଲା ପରେ ଦେଖିବାକୁ କଣ ପସନ୍ଦ ପାରିବାରିକ ଜୀବନର ନୈସର୍ଗିକ ଅନୁଭୂତ ?

ରକ୍ଷଣ ଦଳର ଲୋକେ ଆଜି ଗୋଟିଏ ଆପତ୍ତି କରି ବସିବେ ଯେ ଏପରି ପରିସ୍ଥିତି ହେଲେ—ସ୍ତ୍ରୀ ପୁରୁଷଙ୍କ ସ୍ୱାଧୀନ ହୋଇଗଲେ—ଯେ କୌଣସି ମୁହୂର୍ତ୍ତରେ ସ୍ତ୍ରୀ ଘରଛାଡ଼ି ଅନ୍ୟ ଜଣକୁ ବିବାହ କରିପାରେ । ଅବଶ୍ୟ ବର୍ତ୍ତମାନ ପରିସ୍ଥିତିରେ ପୁରୁଷ ଇଚ୍ଛା ଅନୁସାରେ ଏକାଧିକ ସ୍ତ୍ରୀକୁ ବିବାହ କରିପାରେ ବା ବିବାହ ନ କରି ନିଜର ଭୋଗର ପାଇଁ ରଖିପାରେ ଏବଂ ପୁରୁଷର ଇଚ୍ଛା ସେ ବିବାହ୍ୟତରେ ମଧ୍ୟ ସ୍ତ୍ରୀ ଉପରେ ତାର ଏ ଅଧିକାର ଯେପରି ଅକ୍ଷୁଣ୍ଣ ରହେ । ଏପରି ମତ କରୁଥିବା ପୁରୁଷମାନେ ସ୍ତ୍ରୀମାନଙ୍କୁ ହୀନ ଚକ୍ଷୁରେ ଦେଖନ୍ତି । ସେମାନଙ୍କୁ ଜବରଦସ୍ତ ଘରେ ନ ରଖିଲେ, ସେମାନେ ଯେପରି କର୍ତ୍ତବ୍ୟ ପଥ ଅପେକ୍ଷା କରି ଉଦ୍ଭ୍ରାନ୍ତ ହୋଇ ବାହାରକୁ ଦୌଡ଼ିଯିବା ପାଇଁ । ସ୍ତ୍ରୀ ଜାତିର ସ୍ନେହ ଓ ମନୁଷ୍ୟୋଚିତ ମମତା ସ୍ୱାଧୀନ ମିଳନକୁ ଯେ ବାନ୍ଧି ରଖିପାରେ, ଏଥିରେ ସେମାନଙ୍କର ବିଶ୍ୱାସ ନାହିଁ । ସାମାନ୍ୟ ସାମାନ୍ୟ କାରଣରୁ ସ୍ୱାମୀ, ପିଲାପିଲିଙ୍କୁ ଛାଡ଼ିଦେଇ ଶିକ୍ଷିତା ସ୍ତ୍ରୀ ଚାଲିଯିବ ବୋଲି ଭାବିବା ଭୁଲ୍ । ସ୍ୱାଧୀନତା ଓ ଉପଯୁକ୍ତ ଉଚ୍ଚଶିକ୍ଷା ପାଇଲେ ମନୁଷ୍ୟୋଚିତ ସ୍ନେହ, ପ୍ରେମ, ମମତା ଲୁପ୍ତ କରି ଦେଇ ପାରିବା କଥା ?

ଜୋରକରି ବାନ୍ଧି ରଖିଲେ କଣ ପ୍ରେମ ଉଚ୍ଛୃଙ୍ଖଳର ବୃଦ୍ଧି ଘଟିବ ? ଏ ପ୍ରକାର ସୂକ୍ଷ୍ମ ଗଣ୍ଡରେ ପୁରୁଷର ସ୍ୱାର୍ଥଗତ ସଙ୍କୀର୍ଣ୍ଣତା ଓ ରକ୍ଷଣଶୀଳ ମନୋବୃତ୍ତି କାମ କରୁଛି । ସ୍ତ୍ରୀ ସ୍ୱାଧୀନତା ପାଇଲେ ଓ ପୁରୁଷର ସମାଧିକ ହୋଇଗଲେ ପୁରୁଷ ଇଚ୍ଛାନୁସାରେ ତାକୁ ବ୍ୟବହାର କରିପାରିବ ନାହିଁ । ଇଚ୍ଛାମତେ ଏକାଧିକ ସ୍ତ୍ରୀକୁ ଧରିଲେଭି ଦେଖାଇ ନିଜ ସୁବିଧା ଲାଗି କରି ପାରିବ ନାହିଁ—ଏକାଧିକ ସ୍ତ୍ରୀ ବିବାହ କରି ପାରିବ ନାହିଁ—ବେଶ୍ୟାବୃତ୍ତିକୁ ନ୍ୟାଯ୍ୟ ସଙ୍ଗତ ସମାଜିକ ଅନୁଷ୍ଠାନ ରୂପେ ରଖିପାରିବ ନାହିଁ । ଫଳରେ ତାର ବ୍ୟକ୍ତିସ୍ୱାତନ୍ତ୍ର୍ୟ ମୂଳରେ ବାଧା ପଡ଼ିବ, ତେଣୁ ସେ ନାନା ଅସଙ୍ଗତ ଯୁକ୍ତି କରି ସ୍ତ୍ରୀ ପରାଧୀନତାକୁ କାଏମ କରି ରଖିବାକୁ ଚାହୁଁଛି ।

ମନୋବିଜ୍ଞାନ ଦୃଷ୍ଟିରୁ ବିଚାର କଲେ ମଧ୍ୟ ଜଣାପଡ଼େ ଯେ ସ୍ତ୍ରୀ ଅପେକ୍ଷା ପୁରୁଷ ବେଶି ଚଞ୍ଚଳ । ମନୁଷ୍ୟ ନିଜ ମନ ଅନୁସାରେ ଅନ୍ୟମାନଙ୍କୁ ବିଚାର କରିଥାଏ । ପୁରୁଷର ଯୌନ ପ୍ରବୃତ୍ତି ଏପରି ଯେ ସେ ବିନା ବାଧାରେ ଅନେକ ସମୟରେ ଯେ କୌଣସି ସ୍ତ୍ରୀ ସହିତ ଯୌନ ସହବାସ କରିପାରେ—ତାର ଯୌନଇଚ୍ଛା ଅତିଶୀଘ୍ର ଉଦ୍ଦୀପିତ ହୋଇପାରେ ଏବଂ ଅଳ୍ପ ସମୟରେ ମଧ୍ୟ ନିର୍ବାପିତ ହୋଇଯାଏ । ତେଣୁ କୌଣସି ସ୍ନେହ କିମ୍ବା ଆକର୍ଷଣ ନ ଥାଇ ସୁଦ୍ଧା ଅବାଧରେ ସେ ଯୌନ ମିଳନରେ ଯୋଗ ଦେଇପାରେ, କିନ୍ତୁ ସ୍ତ୍ରୀର ଯୌନଇଚ୍ଛା ଏତେ ଶୀଘ୍ର ଉଦ୍ଦୀପିତ ହୁଏନାହିଁ ଏବଂ ବହୁ କ୍ଷେତ୍ରରେ ମଧ୍ୟ ଏହାର ପରିତୃପ୍ତି ହୁଏ, ତେଣୁ ସ୍ତ୍ରୀ ହଠାତ୍ ଯୌନ ସଙ୍ଗମ ପାଇଁ ପ୍ରସ୍ତୁତ ହୋଇପାରେ ନାହିଁ । କିନ୍ତୁ ପୁରୁଷ ନିଜର ପ୍ରକୃତି ଅନୁସାରେ ସ୍ତ୍ରୀକୁ ବିଚାର କରେ ଏବଂ ନିଜକୁ ଦୋଷ ନ ଦେଇ ଅନ୍ୟ ଉପରେ ଦୋଷଟି ଢାଳିଦେଇ ତାର ଅଧିକାର

ସ୍ୱତରେ ନିନ୍ଦା କରିବା ଦ୍ୱାରା ଉଦେବେକ ଆଗରେ ନିଜକୁ ଦୋଷଶୂନ୍ୟ ବୋଲି ପ୍ରମାଣିତ କରି ଆନନ୍ଦ ପାଏ ।

ସ୍ତ୍ରୀ ସ୍ୱାଧୀନତା ଫଳରେ ସ୍ୱାମୀ ସ୍ତ୍ରୀ ସମ୍ପର୍କ କୋହଳ ହେବା ପରିବର୍ତ୍ତେ ବରଂ ବୃଦ୍ଧି ପାଇବା କଥା—ବ୍ୟକ୍ତିତ୍ୱର ବର୍ଦ୍ଧିବା ପରି-ବର୍ତ୍ତେ କମିବାର ଆଶା ନାହିଁ । ଉପଯୁକ୍ତ ଶିକ୍ଷା ଯୋଗୁଁ ବରଂ ବହୁ ସାମାଜିକ ଦୁର୍ଗୁଣ ଲୋପ ପାଇଯିବ । ମାନସିକ ସାମ୍ୟ, ଆର୍ଥିକ ଉନ୍ନତି ଏବଂ ସନ୍ତାନମାନଙ୍କର ଉପଯୁକ୍ତ ଶିକ୍ଷା ଓ ସ୍ୱାସ୍ଥ୍ୟ ଯୋଗୁଁ ପାରିବାରିକ ଜୀବନ ମଧୁରତର ହୋଇପାରିବ—ଦାମ୍ପତ୍ୟ ସୁଖ ବହୁ ପରିମାଣରେ ବୃଦ୍ଧି ପାଇବ—ପ୍ରକୃତ ପ୍ରେମର ସୃଷ୍ଟି ହେବ ଏବଂ ଉଭୟେ ଉଭୟଙ୍କୁ ନିଜ ନିଜ କାର୍ଯ୍ୟରେ ପ୍ରେରଣା ଓ ଉତ୍ସାହ ଦେବା ଦ୍ୱାରା ପ୍ରେମର ସମ୍ପୂର୍ଣ୍ଣତା ହେବ । ପାରିବାରିକ ଜୀବନ ସୁଖକର ଓ ଦ୍ୱନ୍ଦ୍ୱ ରହିତ ହେବା ଯୋଗୁଁ ସାମାଜିକ ଜୀବନ ମଧ୍ୟ ମଧୁର ଓ ସୁଖକର ହେବ । ସ୍ୱାସ୍ଥ୍ୟ ସମ୍ପନ୍ନ ଓ ଉଚ୍ଚ ଆଦର୍ଶାଭିଳାଷୀ ବଳିଷ୍ଠ ମନୋଭାବାପନ୍ନ ନରନାରୀଙ୍କ ଦ୍ୱାରା ହିଁ ପ୍ରକୃତ ମାନବଜାତିର ସଭ୍ୟତା ଓ ସଂସ୍କୃତି ଗଢି ଉଠିବ ।

---

ସମାପ୍ତ

ମୁଦ୍ରାକର ଶ୍ରୀ ପୁରୁଷୋତ୍ତମ ମହାପାତ୍ର
ଗ୍ରାମସେବକ ସମବାୟ ପ୍ରେସ୍ ବାଖରାବାଦ କଟକ—୨